# ଜନଶିକ୍ଷାରେ ଲୋକ ସାହିତ୍ୟର ଭୂମିକା



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ,
ଭୁବନେଶ୍ୱର-୭୫୧୦୦୧

# ଜନଶିକ୍ଷାରେ ଲୋକ ସାହିତ୍ୟର ଭୂମିକା

ସଂପାଦନା : ଡକ୍ଟର ବିଭୂତି ପଟ୍ଟନାୟକ
ପ୍ରଥମ ପ୍ରକାଶ : ୧୯୯୬
ପ୍ରକାଶକ : ଡକ୍ଟର ବିମଳେନ୍ଦୁ ମହାନ୍ତି, ନିର୍ଦ୍ଦେଶକ,
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ଭୁବନେଶ୍ୱର-୭୫୧୦୦୧
ପ୍ରକାଶନ ସଂଖ୍ୟା : ଏସ୍. ଆର. ସି. - ୧୭୨-୪/୯୬
ଛାପା ସଂଖ୍ୟା : ଦୁଇ ହଜାର
ମୁଦ୍ରାକର : ନିସ୍ୱାସ, ଭୁବନେଶ୍ୱର-୧୬
ମୂଲ୍ୟ : ଛଅଟଙ୍କା ମାତ୍ର

**JANA SIKHYARE LOKA SAHITYARA BHUMIKA**

Edited by : Dr. Bibhuti Pattanaik
1st Edition : 1996
Publisher : Dr. B. Mohanty, Director, SRC for AE, Orissa, Bhubaneswar - 751001
Publication No. : SRC - 172 - 4/96
No. of Copies : 2,000
Printed by : NISWASS, Bhubaneswar-16
Price : Rupees Six only

# ସୂଚୀପତ୍ର

## ବହି ବିଷୟରେ ପଦେ :

ଓଡ଼ିଆ ଚଳଣିରେ ଢଗ ଢମାଳିର ଆଦର କୋଉ ପୁରୁଣା କାଳରୁ ରହି ଆସିଚି । ଏଥିରେ, ଅଳପ କଥା ଭିତରେ ମନକୁ ଭେଦିଲା ପରି ଭାବମାନ ଭରପୂର ହୋଇ ରହିଥାଏ । ସୁନା ରୂପା ଅଳଂକାରରେ ଦାମିକା ପଥର ବସେଇଲା ପରି ଏ ଢଗଢମାଳିମାନ ଆମେ ଆମ ସାଧାରଣ ଜୀବନରେ କୁହାକୁହି ହୋଇ ଆନନ୍ଦ ପାଉ ।

ଢଗ ଢମାଳି ଜନଭାଷାର ଏକ ଅଂଶ । ଏଥିରେ ଭାଷା ବୋଇଲେ, ମୋଟେ ପଦେ ବା ଦୁଇପଦ । ଅଥଚ ସେତିକି କଥାର ଭାବ ଏତେ ଗହନ ଯେ, ଲାଗେ, ସତେ ଅବା ସେଇ ପଦକ ଭିତରେ ପୋଥିଟାକର ମହିମା ଲୁଚି ରହିଚି ।

**ସଂକଳକ**

# ଲୋକ ସାହିତ୍ୟ ଓ ଜନଶିକ୍ଷା

ଲୋକକାହାଣୀ, ଢଗଢମାଳି, ପ୍ରବାଦପ୍ରବଚନ, ଲୋକନାଟକ, କାନ୍ଦଣା, ରଜଦୋଳିଗୀତ, ହଳିଆଗୀତ, ନାଉରିଆଗୀତ ପ୍ରଭୃତି ହେଉଛି ଲୋକସାହିତ୍ୟର ଅନ୍ତର୍ଭୁକ୍ତ । ଏହାର କୌଣସି ନିର୍ଦ୍ଦିଷ୍ଟ କବି ନ ଥାନ୍ତି । ଗ୍ରାମୀଣ କବିର କୌଣସି ଆବେଗ-ତରଳ ମୁହୂର୍ତ୍ତର ଅନୁଭୂତିସିକ୍ତ ରସାଳ ଏବଂ ସ୍ୱତଃସ୍ଫୂର୍ତ୍ତ ପ୍ରକାଶ ହେଉଛି ଲୋକ ସାହିତ୍ୟ । ପଦସହିତ ପଦ ଯୋଡି, ଅକ୍ଷର ମିଳାଇ, ଛନ୍ଦଚିନ୍ତା କରି ଏ ଧରଣର ସାହିତ୍ୟ ସୃଷ୍ଟି କରାଯାଏ ନାହିଁ । କହିବା ବାହୁଲ୍ୟ ଯେ, କବିର କଳ୍ପନା ବିଳାସ ଏଥିରେ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ଅଧିକାଂଶ କ୍ଷେତ୍ରରେ କବି ନିରକ୍ଷର । ଅକ୍ଷର ପରିଚୟ ଥିଲେ ବି ଲେଖନ ସାମଗ୍ରୀ ସୁଲଭନୁହେଁ, ପୁଣି ଏ ଗୁଡିକ ଯେ, ସାଇତି ରଖିବା ଆବଶ୍ୟକ ଏ ଅବବୋଧ ନ ଥାଏ । ଏ ସବୁ କାରଣରୁ ମୁହଁରୁ ଏହାର ସୃଷ୍ଟି ହୁଏ । ମୁହଁରେ ଏହାର ପରିପୁଷ୍ଟି ହୁଏ । କାଳର ସୁଅରେ କେତେ ଭାସିଯାଏ । କେତେ ଅବା କାଳରୁ କାଳାନ୍ତରକୁ ଗଡିଚାଲେ ।

ଢଗ ଢମାଳି ହେଉଛି, ଲୋକସାହିତ୍ୟର ଏକ ପ୍ରଭାବଶାଳୀ ବିଭାଗ । ଏହାକୁ ଅନୁଭୂତିର ସଂକ୍ଷିପ୍ତ, ରସାଳ ଗୀତିମୟ ପ୍ରକାଶ ବୋଲି କୁହାଯାଇପାରେ । ଶିକ୍ଷା ସମ୍ପର୍କରେ ଏଥିରେ ଗ୍ରାମୀଣ କବି ନିଜର ସ୍ପଷ୍ଟ ମତ ଦେଇଥିବାର ଦେଖିବାକୁ ମିଳିବ । ଗୋଟିଏ ଉଦାହରଣ ଦେଖାଯାଉ –

*ପାଠ ପଢିଲେ ଦୁଧଭାତ*
*ନ ପଢିଲେ ଠେଙ୍ଗା ନାତ ।*

ପାଠ ପଢିବାର ସୁଖମୟ ପରିଣାମ ସମ୍ପର୍କରେ ଏଥିରେ ସୂଚନା ରହିଛି । ସେଇଭଳି 'ପାଠପଢିଥିଲେ ଗୀତ ଗାଉଥାଏ, ବାଉରୀ କଣ୍ଡରା ପୁଅ'- ଏଥିରେ ମଧ୍ୟ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଉଲ୍ଲେଖ କରାଯାଇଛି । ଉନବିଂଶ ଶତକର ଶେଷ ପାଦରେ ସୃଷ୍ଟି ହୋଇଥିବା ଏ ପହଳିଟିକୁ ବୋଧ ହୁଏ ସମସ୍ତେ ଶୁଣିଥିବେ ।

ତାହା ହେଉଛି – ପାଠ ପଢିବି, ଓକିଲ ହେବି
କାଳିଆ ଘୋଡାରେ ଚଢିବି
ମଧୁ ବାବୁ ସାଙ୍ଗେ ଲଢିବି ।

ଆକାଂକ୍ଷିତ ଏକ ଜୀବନ ପାଇଁ ପାଠ ପଢିବା ଯେ ନିତାନ୍ତ ଜରୁରୀ, ଗୋଟିଏ ସମୟରେ ଶିଶୁବୟସରୁ ପିଲାମାନଙ୍କୁ ଏ ବିଷୟରେ ସଚେତନ କରି ଦିଆଯାଉଥିଲା । ଅବଶ୍ୟ ଏ ସବୁ ପଢା, ପିଲାମାନଙ୍କର ପଢା । ବୟସ୍କମାନଙ୍କ ସମ୍ପର୍କରେ ଏଥିରେ ସୂଚନା ନାହିଁ । ତେବେ ପିଲାମାନଙ୍କୁ ପ୍ରେରିତ କରିବାକୁ ବୟସ୍କମାନେ ଯେ ଏହାର ବାର୍ତ୍ତା ଦ୍ୱାରା ପ୍ରଭାବିତ ହେବେ ନାହିଁ, ଏ ଭଳିମନେ କରିବାର କୌଣସି କାରଣ ନାହିଁ ।

ସାଧାରଣ ଲୋକେ ସାହିତ୍ୟର ତତ୍ତ୍ୱ ବୁଝନ୍ତି ନାହିଁ । ମାତ୍ର ବୁଝନ୍ତି ହୃଦୟର ଭାଷାକୁ । ହାସପରିହାସ, ଥଟ୍ଟାତାମସା, ବ୍ୟଙ୍ଗବିଦ୍ରୂପର ସ୍ୱର ତାଙ୍କ ମନରେ ଠିକ୍ ଭେଦିଯାଏ । କଳ୍ପନା ବିଳାସର ଟାଣୁଆ ସୁଅରେ ସେମାନେ ଭାସିଯାଆନ୍ତି । କଥା କାହାଣୀର ଗନ୍ଧ ପାଇଲେ କାନଡ଼େରିବାକୁ ତିଆରି ହୋଇଯାଆନ୍ତି । ମନଛୁଆଁ ଲୋକସଂଗୀତର ଝଙ୍କାର ସେମାନଙ୍କ ମନରେ ଅନୁରଣିତ ହୋଇ ତୁଣ୍ଡରେ ଅହରହ ପ୍ରକଟିତ ହେଉଥାଏ । ରସର ଅଫୁରନ୍ତ ଧାରା ପ୍ରବାହରେ ବୁଡ଼ିଯିବାକୁ ସେମାନଙ୍କ ମନପ୍ରାଣ ସଦା ଉନ୍ମୁଖ ହୋଇଥାଏ । ଲୋକ ସାହିତ୍ୟ ହେଉଛି ସେମାନଙ୍କ ପାଇଁ ପ୍ରେମଶୀଳା କାନ୍ତା, ଯାହା ସେମାନଙ୍କୁ ବିମୋହିତ କରେ, ମୁଗ୍ଧ କରେ ଏବଂ ଲୁବ୍ଧ କରେ; ସ୍ନେହରେ ହାତଧରି ନିଜ ବାଟରେ ସେମାନଙ୍କୁ ଚଲାଇ ନିଏ । ସମାଜ-ଜୀବନ ପାଇଁ ଯାହା ବାର୍ତ୍ତା ଦେବାକଥା, ଲୋକକବିମାନେ ଏହାରି ସାହାଯ୍ୟରେ ଦେଇଥାଆନ୍ତି । 'ବୋଲୋ, ମଗର ପ୍ୟାରସେ'-ସ୍ନେହରେ କହ, ସଦିଚ୍ଛାରେ କହ— ଏହାହିଁ ହେଉଛି ଲୋକ ସାହିତ୍ୟର ଏକମାତ୍ର ଲକ୍ଷ୍ୟ ।

ଗୋଟିଏ ଉଦାହରଣ ଦେଖାଯାଉ । ଢଗଟିଏ-ଅନୁଭୂତିର ରସରେ ଜୁବୁଜୁବୁ । ପଦିଏ ଲେଖାରେ ପୋଥିଏ କଥା କହି ଦିଆଯାଇଛି । ସେଇଟି ହେଉଛି –

ଅରଜେ ଜଣେ, ଖାଆନ୍ତି ପଣେ
ସେଇ ଘରଟି ବୁଡ଼ଇ ଦିନେ ।

ଏ ହେଉଛି ଏକ କୃଷିଭିତ୍ତିକ ସଂସ୍କୃତିର ଦର୍ଶନ । ଏକାନ୍ନବର୍ତ୍ତୀ ବିରାଟ ପରିବାର । ସମସ୍ତଙ୍କର କର୍ମ କୃଷି ଅଭିମୁଖୀ । ଖଟିବେ, ଖାଇବେ । ଅନ୍ୟଥା ହେଲେ

ପରିବାରର ଅର୍ଥନୀତି ଭୁଷୁଡ଼ି ପଡିବ । ପରିଶ୍ରମ କର, ଖାଅ, ବାସ୍ । ଇଏ ଗଲା ଗୋଟିଏ ଦିଗ । ଅନ୍ୟଦିଗ ହେଉଛି, ଛୋଟ ପରିବାର ପାଇଁ ବାର୍ତ୍ତା । ଜଣକର ଅର୍ଜନରେ ପଣେ ଭାଗ ବସାଇବାରୁ ପାରିବାରିକ ବିପର୍ଯ୍ୟୟର ସମ୍ଭାବନା । ତେଣୁ ପରିବାର ଯଥା ସମ୍ଭବ ଛୋଟକର । ସେମିତି ଶ୍ରମର ମର୍ଯ୍ୟାଦା ସମ୍ପର୍କରେ ମଧ୍ୟ ଲୋକସାହିତ୍ୟରେ ବାର୍ତ୍ତାର ଅଭାବ ନାହିଁ ।

ଯଥା :—

ହୁଳହୁଳି ଦେବା ବେଳକୁ ତୁଣ୍ଡରେ ଘା
ଖାଇବା ବେଳକୁ ସାତ ପୁଅର ମା ।

ପରିବାର ଚାଲେ ଏହାର ସମସ୍ତ ସଦସ୍ୟଙ୍କର ଶ୍ରମ ଆଉ ଚିନ୍ତାରେ । କେହି ସେଥିରୁ ଓହରି ଗଲେ ବିଭ୍ରାଟ ସୃଷ୍ଟି ହେବ ହିଁ ହେବ । ସେଇଥିପାଇଁ ଏ ସସ୍ନେହ ଅନାବିଳ-ବ୍ୟଂଗ ଧର୍ମୀ ଚେତାବନୀ । ଏଥିରେ ସଚେତନ କରିବାର ପ୍ରୟାସ ଅଛି । ମାତ୍ର ଅନ୍ୟକୁ ବିନାକାରଣରେ ଆଘାତ କରିବାର ଅହଙ୍କାର ନାହିଁ । ଏକ ସରଳ କୃଷି ସଂସ୍କୃତିର ଏହାହିଁ ହେଉଛି ଲକ୍ଷ୍ୟ । ସାରଳାଦାସ ଥିଲେ ଏଇ ସଂସ୍କୃତିର ପ୍ରତିନିଧି । ତେଣୁ ସେ ମଧ୍ୟ ମହାଭାରତରେ ଛୋଟ ପରିବାରର ବାର୍ତ୍ତା ଦେଇଗଲେ ।

ଅପାର କୁଟୁମ୍ବ ତୁହୋ ଅରଜିଲୁ ଧୃତରାଷ୍ଟ୍ର
ମୋହ ବିଚାରେ ତୋତେ ଅନେକ ହୋଇବାକ କଷ୍ଟ ।

ବହୁ କୁଟୁମ୍ବ ଅର୍ଥ ବହୁ ସମସ୍ୟା । ଆର୍ଥିକ, ମାନସିକ ଚାରିଆଡୁ । ସେଥିପାଇଁ ଏ ଚେତାବନୀ ।

ନାଟକ ହେଉଛି ଏକ ସଂସ୍କୃତିବନ୍ତ ଜାତିର ମର୍ଯ୍ୟାଦାର ସ୍ମାରକୀ । ପଞ୍ଚଦଶ ଶତକରେ ସାରଳାଦାସ 'ମହାଭାରତ'ରେ ଏ ସମ୍ପର୍କରେ ସୂଚନା ଦେଇ ଲେଖିଥିଲେ—

ଆହେ ବିରାଟ ଯେ ଦେଶେ ରଙ୍ଗ ସଭା ନାହିଁ
ଯାତ୍ରା ଉତ୍ସବ ଯେ ଦେଶେ ନ ହୁଅଇ
ଯେବଣ ରାଜ୍ୟରେ ପୁଣି ନାହିଁ ଯାଗଯଜ୍ଞ
ଜାଣିବ ସେ ଦେଶ ନିଶ୍ଚେ ଅସୁରଙ୍କ ଭୋଗ୍ୟ ।

ରଙ୍ଗସଭା ଅର୍ଥ ରଂଗମଞ୍ଚ । ଯେଉଁ ଦେଶରେ ତାହାନାହିଁ ସେଇଦେଶ ହେଉଛି ଅସୁରଙ୍କ ଅର୍ଥାତ୍ ଅନାର୍ଯ୍ୟଙ୍କର ଦେଶ । ଏଇକଥା ପରବର୍ତ୍ତୀ କାଳରେ ଇଂରେଜୀ ଆଲୋଚକ କହିଲେ-"A nation is known by its theatre" ମନ୍ତବ୍ୟରେ । ବହୁକାଳରୁ ଏ ରାଜ୍ୟରେ ଲୋକନାଟକର ଅନେକ ବିଭାଗ ସକ୍ରିୟ ରହିଆସିଛି । ଲୀଳା (ରାମଲୀଳା, କୃଷ୍ଣଲୀଳା, ରାଧା ପ୍ରେମଲୀଳା, ଭାରତ ଲୀଳା), ଯାତ୍ରା (ଗୀତିନାଟ୍ୟ, ଗୀତାଭିନୟ ସୁଆଙ୍ଗ, ସମାଜ, ଫାର୍ଶ), ଦଣ୍ଡନାଟ, ଘୁଡୁକୀନାଟ, ଘୁମୁରାନାଟ, ଦେଶୀୟାନାଟ, ଚଇତିଘୋଡା ନାଟ, ପ୍ରହ୍ଲାଦ ନାଟକ, ପାଲା, ଦାସକାଠିଆ, ଛଉ, ରାବଣଛାୟା- ଆହୁରି କେତେ । ଏ ସବୁର କୌଣସି ବିଧିବଦ୍ଧ ଲିଖିତ ରୂପ ନଥିଲା ଆଦି ପର୍ଯ୍ୟାୟରେ । ଗୁରୁପରମ୍ପରାରେ ଏହା ଚାଲୁଥିଲା । ଏ ସବୁଥିରେ ସମାଜିକ ସମସ୍ୟା ସମ୍ପର୍କରେ ସୂଚନା ରହୁଥିଲା । ମାତ୍ର ସେ ସମୟର ସମସ୍ୟାଥିଲା ସ୍ୱତନ୍ତ୍ର । ଶିବପରିବାରକୁ କେନ୍ଦ୍ରକରି ଜଗନ୍ନାଥ ପାଣି ସେ ଯୁଗରେ ମଧ୍ୟ ଏକ ବହୁପତ୍ନୀକଙ୍କର ବେଦନାକୁ ରୂପାୟିତ କରିଥିଲେ, ପାର୍ବତୀ ଆଉ ଗଙ୍ଗାଙ୍କ କଳହର ଏକ ରସାଳ ବର୍ଣ୍ଣନା

ଦେଇ । ପାର୍ବତୀଙ୍କର ଆକ୍ଷେପ 'ଗଙ୍ଗା ବଙ୍ଗାଳୁଣୀ ଦାଉ ସହିବି ନାହିଁ ' ମାଧ୍ୟମରେ ଦୁଇ ସଂସ୍କୃତିର ସଂଘର୍ଷ ଓ ତା'ର ବିଷମୟ ପରିଣାମ ସମ୍ପର୍କରେ ଚେତାବନୀ ଶୁଣାଇ ଦିଆଯାଇଥିଲା । ବହୁ ସମସ୍ୟା ଭାରରେ ବେଙ୍କନା ଦୀର୍ଣ୍ଣ ବିଂଶ ଶତାବ୍ଦୀର ସ୍ଥିତି ସେତେବେଳେ ନଥିଲା । ରୋଗପାଇଁ, ପରିବେଶ ପାଇଁ ଜନବିସ୍ଫୋରଣ ପାଇଁ, ଦାରିଦ୍ର୍ୟ ପାଇଁ ସେ ସମୟରେ ତେଣୁ ବିଶେଷ ଚିନ୍ତା କରାଯାଉ ନଥିଲା । ବିଂଶ ଶତାବ୍ଦୀର ଲୋକନାଟ୍ୟକାର ବିଶେଷକରି ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ପ୍ରମୁଖ ସମସାମୟିକ ସମସ୍ୟାକୁ ନିଜ ନିଜର ରଚନାରେ ସ୍ଥାନ ଦେଲେ । ବୈଷ୍ଣବପାଣି ହିଁ ହେଉଛନ୍ତି ଏ ଦିଗରେ ପଥପ୍ରଦର୍ଶକ । ତାଙ୍କ 'ରଙ୍ଗସଭା'ର ସେଇ ପ୍ରସିଦ୍ଧ ଗୀତ—

''ଛି ଛି ମଦ ଖାଇବି ନାହିଁ' ମୁଁ' କଳାପାଣି ପରି ଦିଶେ ।
ଏଇ କଳାପାଣି ପେଟରେ ପଡିଲେ ଚଉଦ ଭୁବନ ଦିଶେ ।''

ନିଶା ବିରୁଦ୍ଧରେ ଏହା ସେତେବେଳେ ସ୍ୱର ଉଠାଇଥିଲା । ସେତେବେଳେ ମହାତ୍ମାଗାନ୍ଧି ଏ ଦିଗରେ କୌଣସି ପଦକ୍ଷେପ ନେଇ ନଥିଲେ । କେବଳ ସେତିକିନୁହେଁ, ତାଙ୍କର ବହୁ ରଚନାରେ ସେ ଶିକ୍ଷା, ବିଶେଷ କରି ନାରୀଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ, ଦେଶୀୟ ସଂସ୍କୃତିର ମହତ୍ତ୍ୱ, ଶ୍ରମର ମର୍ଯ୍ୟାଦା, ଜନସଂଖ୍ୟା ନିୟନ୍ତ୍ରଣ ପ୍ରଭୃତି ବହୁ ସମସାମୟିକ ସମସ୍ୟା ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ବେକାର ସମସ୍ୟାର ସମାଧାନ ନିମନ୍ତେ କୁଟୀର ଶିଳ୍ପର ପ୍ରସାର କଥା ମଧ୍ୟ ସେ ସେତେବେଳେ କହିଥିଲେ । ଜନ ସଚେତନତା ସୃଷ୍ଟି ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ଗାଁ ଗହଳିର ସାଧାରଣ ନିରକ୍ଷର ଜନତା ପାଣି କବିଙ୍କୁ ଶ୍ରଦ୍ଧା କରୁଥିଲେ, ସମ୍ମାନ ଦେଉଥିଲେ । ତେଣୁ ତାଙ୍କ ମନ୍ତବ୍ୟର ପ୍ରଭାବ ମଧ୍ୟ ସେମାନଙ୍କ ଉପରେ ପଡୁଥିଲା । 'ଛି ଛି ମଦ ଖାଇବି ନାହିଁ' ଏଇ ଗୋଟିଏ ପଦ ସେ କାଳରେ

ଯେଉଁ ଅଭୂତପୂର୍ବ ଜନଜାଗରଣ ସୃଷ୍ଟି କରିଥିଲା, ତାହା ମନେ ପକାଇବା ଭଳି ବ୍ୟକ୍ତି ଏବେ ମଧ୍ୟ ଥାଇ ପାରନ୍ତି । ଏଇ ଭଳି ହେଉଛି ଲୋକ ନାଟକର ପ୍ରଭାବ । ଆମୋଦନ ଏହାର ଏକମାତ୍ର ଲକ୍ଷ୍ୟ ନୁହେଁ । ଏହା ଦର୍ଶକ ବା ଶ୍ରୋତାର ମର୍ମମୂଳକୁ ଦୋହାଲାଇ ଦିଏ । ନିଜର ଆଦର୍ଶରେ ସେମାନଙ୍କୁ ଭସାଇ ନିଏ ।

ସେ ଦିନ ଆମେ ଏଇ ମଂଚରୁ ଶୁଣିଥିଲୁ ଘୁମୁରାର (ଗ୍ରାମୀଣ) କବିଙ୍କ ଆହ୍ୱାନ —

''ତୁଇ କାଏଁ କରିଯିବୁ ଗଙ୍ଗାରେ
ଦଦା, ଗଛ ଗୁଟେ ପଛେ ଜଗା ।''

ଗୋଟିଏ ଗଛ ଲଗାଇବା ର ପୁଣ୍ୟଯେ ଗଙ୍ଗାସ୍ନାନର ପୁଣ୍ୟଠାରୁ ଅଧିକ, କବି ସେଥିରେ ତାହା ସ୍ପଷ୍ଟ କରିଦେଇଛନ୍ତି । ଏଇଭଳି ଉଦ୍ଦିଷ୍ଟ ବାର୍ତ୍ତାକୁ ଲୋକଙ୍କ ପାଖରେ ପହଞ୍ଚାଇବାକୁ ହୁଏ । ସିଧାସଳଖ ଉପଦେଶ, ଗ୍ରାମୀଣ ଜନତାର ସ୍ୱାଭିମାନକୁ ଆଘାତ କରିବ । ତେଣୁ, କହିବେ, ମାତ୍ର ଯେମିତି ଆମେ ପ୍ରଥମରୁ କହିଚୁ-'ପ୍ୟାରସେ' ।

**ଉପସଂହାର-** ସାଧାରଣ ଜନତା ପାଖରେ ପହଞ୍ଚିବାକୁ ହେଲେ ଲୋକସାହିତ୍ୟର ସକ୍ରିୟ ସାହାଯ୍ୟ ନେବାକୁ ହେବ । ଏଥିପାଇଁ କାହାଣୀ, ପ୍ରବାଦ ପ୍ରବଚନ, ଢଗ ଢମାଳି, ନାଟକ ଏକାଙ୍କିକାର ସହାୟତା ଅପରିହାର୍ଯ୍ୟ । ନିଜ ସଂସ୍କୃତି ପାଖରେ ପହଞ୍ଚିବା ପାଇଁ ଏ ଗୁଡିକ ହିଁ ହେବ ସେମାନଙ୍କର ଅବଲମ୍ବନ । ଭୋଗବାଦୀ ପାଶ୍ଚାତ୍ୟ ସଂସ୍କୃତିର ଚରମ ରୂପ ଆମେ ଦେଖିଲେ । ଏଥିରୁ ସୃଷ୍ଟି ଅସ୍ଥିରତା ଅଶାନ୍ତି ଆମେ ପ୍ରତି ନିୟତ ଭୋଗୁଛେ । ବର୍ତ୍ତମାନ ଘରକୁ ଫେରିଯିବାର ବେଳ ଆସିଛି । ନିଜର ପିତୃପିତାମହଙ୍କ ଅମଳରୁ ଆମ ପାଖରେ ଗଚ୍ଛିତ 'ସନ୍ତକ' ଆମକୁ ଖୋଜିବାକୁ ପଡିବ ।

# ଲୋକଗୀତ ଓ ଲୋକକଥା

ଲୋକ ସାହିତ୍ୟ ଓଡିଶାର ସମତଳ ଅଞ୍ଚଳଠାରୁ ବନପର୍ବତ ଘେରା ମାଳ ଅଞ୍ଚଳର ଅଧିବାସୀମାନଙ୍କ ମଧ୍ୟରେ ପରିବ୍ୟାପ୍ତ । ସରଳ ଭାବ ମଧ୍ୟରେ ଲୋକ କବି ବା ବୟସ୍କ ନର ନାରୀ କାହାଣୀ ଓ ସରସ ସଙ୍ଗୀତ ସାବଲୀଳ ରୀତିରେ ପରିବେଷଣ କିରି ମନ ମୋହିଥାନ୍ତି । ଏହି ସବୁ ଜନପ୍ରିୟ ଉପାଦାନମାନଙ୍କରେ ଜନଶିକ୍ଷାର ପ୍ରସାର ପାଇଁ ପ୍ରୋତ୍ସାହକ ଦେବା ଭଳି ବହୁ ଉପାଦେୟ ତଥ୍ୟ ରହିଛି । ଅବଶ୍ୟ ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ତହିଁରେ କେତେକ ଭାବଗତ ପରିବର୍ତ୍ତନର ଆବଶ୍ୟକତା ରହିଛି । ଏପରି ପରିବର୍ତ୍ତନ ନ କଲେ ସେଗୁଡିକ ଯୁଗୋପଯୋଗୀ ହେବ ନାହିଁ । ଧରନ୍ତୁ , ଗୋଟିଏ ପ୍ରବାଦ-''ଛତୁ ଉଠା କାଠ, ନିଶ ଉଠା ପାଠ'' ଏପରି କଥାଟିର ଅର୍ଥ ପଠନ ପ୍ରତି ବିରାଗ ସୃଷ୍ଟି କରିବା ପାଇଁ ପ୍ରୟୋଗ କରାଯାଉଥିଲା । ମାତ୍ର ଆଜିକାଲି ନିଶ ଉଠିବା ବୟସ ହେଲେ ବା ଯୌବନ ଆଗମ କାଳ ପନ୍ଦର ବର୍ଷରୁ ପଇଁତିରିଶି ବର୍ଷ ବୟସ୍କ ବ୍ୟକ୍ତିଙ୍କ ନିମନ୍ତେ ଜନ ସାକ୍ଷରତା କାର୍ଯ୍ୟକ୍ରମ ଗ୍ରହଣ କରାଯାଉଥିବାରୁ ଆଗକାର

ପ୍ରବାଦକୁ ପରିବର୍ତ୍ତିତ ଢଙ୍ଗରେ ପ୍ରକାଶ କରାଯିବା ଆବଶ୍ୟକ । ତେଣୁ ପୂର୍ବରୁ ଥିବା ପ୍ରବାଦରେ ଅଳ୍ପ କିଛି ଯୋଗ କଲେ, ତାହାର ନୂତନ ରୂପଟି ହେବ –

''ଛତୁ ଉଠା କାଠ ମଞ୍ଜିଟି ଟାଣ
ନିଶ ଉଠା ପାଠ ମଞ୍ଜିଟି ଜାଣ ।''

ଏହା ସାକ୍ଷରତା ପାଇଁ ପ୍ରୋତ୍ସାହନ ଦେବାରେ ସହାୟକ ହେବ । ''ପଢିଲେ ପାଠ - ପାଇବା ବାଟ'' କିମ୍ବା ''ପାଠ ବତାଏ ବାଟ'' ଏପରି ଉକ୍ତିଗୁଡିକ ଲୋକଙ୍କ ମନରେ ପାଠ ପଢା ପାଇଁ ଉତ୍ସାହ ସୃଷ୍ଟିକରିବ । ସେହିପରି ପ୍ରଚଳିତ ଆଉ ଏକ ପ୍ରବଚନର ପରିବର୍ତ୍ତିତ ରୂପ,

''କଅଣ କହିବୁ କହ,
ପାଠ ପଢିଥିଲେ ଗୀତ ଗାଉଥିବେ
ସଭିଙ୍କର ପୁଅଝିଅ ।''

ସରଳ ପଲ୍ଲୀବାସୀର ଅନାୟାସ ରଚନା ଆୟାସସାଧ କାବ୍ୟିକ ରଚନାଠାରୁ ଉତ୍କୃଷ୍ଟତର ହୋଇପାରେ । 'ତୁଳାମୁହାଁ କାଙ୍କ' 'ତୁଳସୀ ବଣ ବାଘ ', 'ଗଙ୍ଗା କହିଲେ ଥିବି ଗାଙ୍ଗୀ କହିଲେ ଯିବି ' ଆଦି ବ୍ୟଙ୍ଗାତ୍ମକ ସମାଲୋଚନା ଯୋଗୁଁ ସାରଳାଦାସଙ୍କ ମହାଭାରତରେ ବର୍ଣ୍ଣିତ ଚରିତ୍ର ଗୁଡିକ ଅମର ହୋଇଛନ୍ତି । ଆଜିକାଲି ଢଗଢମାଳି କେବଳ ମୌଖିକ ଭାବରେ ରହିନାହିଁ ବରଂ ଲୋକଜୀବନ ଉପରେ ଆଧାରିତ ଯାତ୍ରା, ନାଟକ, ଗଳ୍ପ, ଉପନ୍ୟାସ ଆଦିକୁ ପ୍ରସାରିତ ହୋଇଛି । ମୌଳିକ ରୂପରେ ଏଥିରେ ଓଡିଆ ଶବ୍ଦମାନଙ୍କର ପ୍ରୟୋଗ, ଭାବ, ରୁଚି ଓ ରୀତିର ଆଭାସ

ମିଳିଥାଏ । ତେଣୁ ଏଗୁଡିକ ମାଧ୍ୟମରେ ପରିବେଷିତ ରଚନାମାନ ମନଛୁଆଁ ହୋଇପାରିବ ।

ଲୋକ ଗୀତ ଓ ଲୋକକଥାର ସଂଗ୍ରାହକମାନେ ଲୋକମୁଖରୁ ଏଗୁଡ଼ିକ ଶୁଣି ସଂଗ୍ରହ କରିଥାନ୍ତି । କହିବାଲୋକର ଭାଷାର ଭୂମିକା ମଧ୍ୟ ଏଥିରେ କମ୍ ନ ଥାଏ । ଜଣକଠାରୁ ଆଉ ଜଣକ ପାଖକୁ ଆସି ଲିଖିତ ରୂପ ପାଇବାବେଳକୁ କେତେ ପରିବର୍ତ୍ତନ ସ୍ତର ଅତିକ୍ରମ କରିଥାଏ ।

ଡାକ ଋଷି ବଚନ ଦନାଇ ଦାସଙ୍କ ପହଳି ଅତ୍ୟନ୍ତ ଲୋକପ୍ରିୟ । ଜ୍ୟୋତିର୍ବିଦ୍ୟା, କୃଷି ଓ ବର୍ଷାଆଦି ବିଷୟରେ ଡାକ-ବଚନ ଅଛି ।

''ଉଇଁ ନ ଦିଶେ ଭିତରେ ପଶେ
ଉତ୍ତର ମେଘ ଦକ୍ଷିଣେ ଆସେ
ସର୍ଜ ଗୋବରରେ ଅଂଶେଇ ବସେ
ଡାକ ବୋଲେ ପୁତ ନିଶ୍ଚେ ବରଷେ ।''

ସେହିପରି ଦନାଇ ବଚନରେ ବହୁତ ପରାମର୍ଶ ଉପଦେଶ ରହିଛି ।

ଅଧୀର ହୋଇ ନ ଖାଇବ ଭାତ
ଅଧୀର ହୋଇ ନ ଚାଳିବ ହାତ
ଅଧୀର ହୋଇ ନ ମାରିବ କାତ
ବୋଲେ ଦନାଇ ପଡ଼େ ଉତପାତ ।

ଲୋକ କଥା ବା କାହାଣୀମାନଙ୍କରେ କଳ୍ପନା ଚାତୁରୀ, ବର୍ଣ୍ଣନା ବୈଚିତ୍ର୍ୟ ଓ ସନ୍ଦେଶମାନ ରହିଥିବାରୁ ସେଗୁଡିକ ମନୋମୁଗ୍ଧକର । ତହିଁରେ ମଧ୍ୟ ପାଠପଢ଼ା ପ୍ରତି ଗୁରୁତ୍ୱ ଦିଆଯିବାର ଦୃଷ୍ଟାନ୍ତ ସ୍ଥଳବିଶେଷରେ ଦେଖିବାକୁ ମିଳେ ।

'ରଙ୍ଗବତୀ ବାରବନୀ ଚଢେଇ' କଥାରେ ସଜନୀ ସାଧବପୁଅ ସୁଜନର ଜୀବନ ବଞ୍ଚାଇବାପାଇଁ ତାକୁ ଘେନି ଜଣେ ରାଜାଙ୍କ ରାଜଧାନୀରେ ପହଞ୍ଚିଲା । ସବୁବେଳେ ତାର ଚିନ୍ତା ସୁଜନକୁ କେମିତି ପାଠ ଦି'ଅକ୍ଷର ପଢାଇବ, ମଣିଷ କରିବ । ଏଥିରେ ପଢାପ୍ରତି ଆଗ୍ରହ ସୃଷ୍ଟି କରିବା ସନ୍ଦେଶ ରହିଛି ।

'କିଲପାଣି କଥା'ରେ ଅସୁରୁଣୀ ସୁନ୍ଦରୀ ସ୍ତ୍ରୀ ରୂପ ହୋଇ ରଜାପୁଅର ମନ ମୋହି ରାଣୀ ହୋଇ ରହିଲା । ରଜାପୁଅ ସଙ୍ଗାତକୁ ମାରିବାକୁ ପାଇଁ ତା' ହାତରେ ପତ୍ରଟିଏ ଲେଖି ଆପଣା ଭାଇପାଖକୁ ପଠାଇଥିଲା । ବାଟରେ ସଙ୍ଗାତ ଗୋଟିଏ ଗଛରେ ଥିବା ଶାଗୁଣାପିଲାଙ୍କୁ ଅହିରାଜ ମୁହଁରୁ ବଞ୍ଚାଇବାରୁ କୃତଜ୍ଞ ଶାଗୁଣା ଦମ୍ପତି ତାର ପତ୍ର ପଢି ମନ୍ତ୍ର ଗୋଟାଳି ସାହାଯ୍ୟରେ ଲେଖାଇଦେଲେ, ସଙ୍ଗାତକୁ ଭଲ ଖାଇବାପିଇବାକୁ ଦେଇ ତାର ଯତ୍ନ କରିବାକୁ । ସେ ପତ୍ର ନେଇ ଅସୁରକୁ ଦେବାରୁ ତା'ର ଜୀବନ ରକ୍ଷା ହେଲା । ଯଦି ସଙ୍ଗାତ ଲେଖାପଢା ଜାଣିଥାନ୍ତା, ତେବେ ମୂଳରୁ ସେ ତାର ପ୍ରତିକାର କରିଥାନ୍ତା ।

ଲୋକ ଗଳ୍ପରେ ବୁଦ୍ଧିର ପ୍ରଶଂସା ଓ ପ୍ରତ୍ୟୁତ୍ପନ୍ନମତିତାର ପୁରସ୍କାର ବିଷୟରେ ମଧ୍ୟ ଅବତାରଣା କରାଯାଇଛି ।

ଏହିପରି ଏକ ଲୋକ ଗଳ୍ପ ''ଭଲା ରାମଜେନା ଚିକ୍କଣ ବାଡି କାନ୍ଧରେ ପକାଇ

ଆସୁଚିରେ ''। ଗଳ୍ପଟି ଗୋଟିଏ ନିରକ୍ଷର ବ୍ରାହ୍ମଣକୁ କେନ୍ଦ୍ର କରି । ଗରିବ ବ୍ରାହ୍ମଣ ବିଦ୍ୟାବୁଦ୍ଧିର ଅଭାବ ଯୋଗୁଁ ରାଜାଙ୍କ ପାଖକୁ ଯାଇପାରେ ନାହିଁ । ମାତ୍ର ବ୍ରାହ୍ମଣୀର ତାଡନାରେ ବାଧ୍ୟରେ ପଡି ରାଜସଭାକୁ ଗଲା । ବାଟରେ ଦେଖିଲା, ମୂଷାଟି ମାଟି ଖୋଳୁଚି । ମନେ ମନେ ସେ ପଦଯୋଡିଲା, ''ଖୋଳୁଚି, ଖୋଳୁଚି, ଖୋଳୁଚିରେ'' । ଏକ ବଗକୁ ପୋଖରୀକୂଳରେ ମାଛକୁ ଚାହିଁ ତୁନି ହୋଇ ବସିବା ଦେଖି, ଦ୍ୱିତୀୟ ପାଦ ଯୋଡିଲା, ''ଭଲାତୁନି ହୋଇ ବସିଚିରେ ''। କିଛି ଦୂର ଯାଇ ବିଲୁଅଃଟିଏ କିଆବଣରେ ଏପଟ ସେପଟ ହେବା ଦେଖି ତୃତୀୟ ପାଦକୁ ଭାବିଲା, ''ନର୍କ ମର୍କ ହଉଚିରେ '' । ଆଉ କିଛି ବାଟ ଯାଆନ୍ତେ ଜଣେ ଲୋକ ଖଣତିଟାଏ କାନ୍ଧରେ ପକାଇ ଆସୁଥିବା ଦେଖି ଗାଇଲା ''ଭଲା ରାମଜେନା ଖନ୍ତି ବାଡି କାନ୍ଧରେ ପକାଇ ଆସୁଚିରେ ''। ରାଜସଭାରେ ପଣ୍ଡିତମାନଙ୍କ ସାମନାକୁ ଯିବାକୁ ତାର ଛାତି କୁଳାଇଲା ନାହିଁ । ତେଣୁ ରାଜବାଟୀରେ ରାଜାଙ୍କ ଦୃଷ୍ଟିପଡିଲାଭଳି ସ୍ଥାନରେ ଜଣକ ସାହାଯ୍ୟରେ ଚାରୋଟିଯାକ ପାଦ ଲେଖାଇ ଦେଇ ଫେରି ଆସିଲା ।

ରାତିରେ ରାଜା ଶୟନ କରିବାକୁ ଯିବା ପୂର୍ବରୁ ତାଙ୍କ ଦୃଷ୍ଟିରେ ଏ ପଦ ପଡିବାରୁ ସେ ଉଚ୍ଚସ୍ୱରରେ ପାଠ କରି ହସିଲେ । ସେତେବେଳେ ଗୋଟିଏ ଚୋର ରାଜାଙ୍କ ଉଆସରେ ପଶି ଚୋରିକରିବାପାଇଁ ଖନ୍ତି ଧରି ଆସିଥିଲା । ରାଜାଙ୍କ ପାଟିରେ ଏ ପଦ ଆବୃତ୍ତି ଶୁଣି ପଳାଇଗଲା ଓ ରାଜା ତାକୁ ଜାଣି ପାରିଛନ୍ତି ଭାବି ସକାଳେ ରାଜାଙ୍କୁ ସାକ୍ଷାତକରି କ୍ଷମାପ୍ରାର୍ଥନା କଲା । ରାଜା ଚୋରଠାରୁ ତାର ଉଦ୍ଦେଶ୍ୟ କଥା ଜାଣି ଉଆସ ଚୋରଦାଉରୁ ରକ୍ଷା ପାଇ ଥିବାରୁ ଏହି ପଦର କର୍ତ୍ତା ବ୍ରାହ୍ମଣକୁ ଖୋଜି ପୁରସ୍କୃତ କଲେ ।

ଏହି ଗଳ୍ପରେ ବିଦ୍ୟା ପ୍ରତି ଆଦର ଓ ବୁଦ୍ଧିର ପ୍ରଶଂସା ସହିତ ପାଠ ନ ପଢିଥିବାରୁ ବ୍ରାହ୍ମଣମନରେ କ୍ଷୋଭର ବର୍ଣ୍ଣନା କରାଯାଇ ପାଠପଢା ପ୍ରତି ଆଗ୍ରହ ସୃଷ୍ଟି କରାଯାଇଛି ।

ଲୋକନାଟକ ଓ ପାରଂପରିକ ଲୋକଗାଥାଗୁଡକରୁ ଅନେକ ଉପାଦେୟ କାହାଣୀ ଚିହ୍ନଟ କରି ସେଗୁଡିକ ସରଳ ଭାଷାରେ ଓ ମନୋରଞ୍ଜନ ଧର୍ମୀ ଗଳ୍ପ ବା ସଙ୍ଗୀତ ମାଧ୍ୟମରେ ପରିବେଷଣ କରାଗଲେ ସାକ୍ଷରତା ଅଭିଯାନ କାର୍ଯ୍ୟକ୍ରମ ଫଳପ୍ରଦ ହୋଇପାରିବ । ନିରକ୍ଷରମାନଙ୍କୁ ସାକ୍ଷରକରାଇବା ନିମନ୍ତେ ସେମାନଙ୍କ ମନରେ ଆଗ୍ରହ ସୃଷ୍ଟି କରାଇବାର ଆଧୁନିକ ଉପକରଣ ଶ୍ରବ୍ୟ ବା ଶ୍ରବ୍ୟ-ଦୃଶ୍ୟ ରେକର୍ଡ୍ ବା କାସେଟ୍ ପ୍ରସ୍ତୁତକରି ଶିକ୍ଷାର ସନ୍ଦେଶ ସେମାନଙ୍କ ପାଖରେ ପହଞ୍ଚାଇଦେବା ଉଚିତ ।

# ଓଡ଼ିଆ ଲୋକକଥା

ଭାରତ ତତ୍ତ୍ୱବିତ୍ ଜର୍ମାନ ପଣ୍ଡିତ ମାକ୍ସମୁଲାର ଲୋକ କଥା ସଂପର୍କରେ ଥରେ ମନ୍ତବ୍ୟ କରିଥିଲେ -" କେତେ ସାମ୍ରାଜ୍ୟର ପତନ ଘଟିଛି, କେତେ ଦୁର୍ଗ, ରାଜ ପ୍ରାସାଦ ଭାଙ୍ଗି ନିଶ୍ଚିହ୍ନ ହୋଇ ଯାଇଛି, କିନ୍ତୁ ରସଗ୍ରାହୀ ପାଠକ ଓ ଗଳ୍ପ ପ୍ରିୟ କଥକର ସ୍ମୃତିରେ ପ୍ରାଚୀନ ଲୋକ କଥା ଆଜି ସୁଦ୍ଧା ଜୀବନ୍ତ ହୋଇ ରହିଛି । " ବାସ୍ତବରେ ସ୍ମୃତି ପରମ୍ପରାରେ ଏ ଲୋକ କଥା ଗୋଟିଏ ପିଢ଼ିରୁ ଆଉ ଗୋଟିଏ ପିଢ଼ିକୁ ଗତି କରି ଅବଶେଷରେ ଆଜି ଆମ ପାଖରେ ଲିଖିତ କାହାଣୀ ଭାବରେ ପହଞ୍ଚିଛି । ଏ ସବୁ ଗଳ୍ପର ସ୍ରଷ୍ଟା କିଏ, ଏ କଥା କେହି କହିପାରିବେ ନାହିଁ । ଏ ସବୁ ଲୋକ କଥାର କୌଣସି ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମା ରେଖା ମଧ୍ୟ ନାହିଁ । ବିଶ୍ୱମନ ଏହାର ବିହାରଭୂମି, ବିଶ୍ୱମାନବିକତା ଏହାର ଆଦର୍ଶ । ଏହା ବହୁଜନ କୀର୍ତ୍ତି; ଏହାର ଆବେଦନ ସାର୍ବଜନୀନ ।

କେଉଁ ଆଦିମ କାଳରୁ , ମଣିଷ ସଭ୍ୟତାର ଆରମ୍ଭରୁ ଭୂତ, ଭଗବାନ ଓ କାହାଣୀ ହାତ ଧରା ଧରି ହୋଇ ଚାଲି ଆସିଛନ୍ତି । ଭୂତର ଅସ୍ତିତ୍ୱ ଅଛି କି ନାହିଁ ତାହା ନ ଜାଣି ମଧ୍ୟ ମଣିଷ ଭୂତକୁ ଭୟ; ଈଶ୍ୱର ଅଛନ୍ତି କି ନାହିଁ ନ ଜାଣି ମଧ୍ୟ ଭଗବାନଙ୍କୁ ଭକ୍ତି ଏବଂ କାହାଣୀ ସତ୍ୟ ନୁହେଁ ବୋଲି ଜାଣି ମଧ୍ୟ ଗଳ୍ପକୁ ଆଦିମ ରୁ ଆଧୁନିକ ମଣିଷ ସମସ୍ତେ ଆଦର କରି ଆସିଛନ୍ତି । ଆଉ ସବୁଠାରୁ ମଜାର କଥା, ଭୂତ ଓ ଭଗବାନ ପ୍ରାଚୀନ ଲୋକ କଥାରେ ଅନେକ ସମୟରେ ପ୍ରଧାନ ନାୟକ ମଧ୍ୟ ହୋଇ ଯାଇଛନ୍ତି ।

ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ କାହାଣୀର ଆକର୍ଷଣୀୟ ଗଳ୍ପ ଭାଗ, ସରଳ ପ୍ରକାଶଭଙ୍ଗୀ ଏବଂ ଗାଁଉଲି କଥିତ ଭାଷାର ସୌନ୍ଦର୍ଯ୍ୟ ହେଉଛି ଲୋକକଥାର ପ୍ରଧାନ ସଂପଦ । ଯେଉଁ କାହାଣୀର କଥାବସ୍ତୁ ଶ୍ରୋତାର ଆଗ୍ରହ ଓ ଉତ୍କଣ୍ଠାକୁ ଶେଷ ପର୍ଯ୍ୟନ୍ତ ଧରି ରଖି ନପାରେ, ସେ କାହାଣୀ ଶ୍ରୋତାର ମନେ ରହେ ନାହିଁ । ସେଭଳି କାହାଣୀ ବିସ୍ମୃତିର ଅନ୍ଧକାରରେ ଅଦୃଶ୍ୟ ହୋଇଯାଏ । ତେଣୁ ଆଜି ଆମ ପାଖରେ ସଞ୍ଚିତ ହୋଇ ରହିଥିବା ଲୋକକଥା ଶ୍ରୋତାମାନଙ୍କ ସ୍ମୃତିର କଷଟି ପଥରରେ ପରୀକ୍ଷିତ, ରସୋତ୍ତୀର୍ଣ୍ଣ, ଆକର୍ଷଣୀୟ କାହାଣୀ । ବାଳକ, ବୃଦ୍ଧ ଉଭୟ ବୟସର ପାଠକମାନଙ୍କ ପାଖରେ ଏହାର ସମାନ ଆକର୍ଷଣ । ତେଣୁ ସାକ୍ଷରତା ସଂପ୍ରସାରଣରେ ଏହି ଲୋକକଥାର ପ୍ରୟୋଜନୀୟତା ନିଃସନ୍ଦେହରେ ଅଧିକ ।

ଓଡ଼ିଆ ସାହିତ୍ୟରେ ଗଦ୍ୟ ଭାଷାର ବିକାଶ ଘଟିବା ପରେ ଭାରତବର୍ଷର ଅନ୍ୟ ପ୍ରାନ୍ତୀୟ ଭାଷା ଭଳି ଉନବିଂଶ ଶତାବ୍ଦୀର ଶେଷ ଭାଗରେ ପ୍ରଚଳିତ ଲୋକକଥା ଗାଉଁଲି ଗଳ୍ପ ନାମରେ ଗଦ୍ୟରେ ଲିପିବଦ୍ଧ ହୋଇ ଥିଲା । କିନ୍ତୁ ପୂର୍ବରୁ ଏହି ସବୁ

କାହାଣୀ ପଦ୍ୟରେ ହିଁ ରଚିତ ହୋଇଥିଲା । ପଞ୍ଚସଖା ଯୁଗରେ ''ଚୟିନିଙ୍କ ଚକଡ଼ା''ରେ ପ୍ରଥମ ଓଡ଼ିଆ ଲୋକ ଗଳ୍ପର ଆଭାସ ମିଳେ । ପରବର୍ତ୍ତୀ କାଳରେ ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବ ସିନ୍ଧୁ' ରେ ବର୍ଣ୍ଣିତ କାହାଣୀ ଗୁଡ଼ିକୁ ପ୍ରଥମ 'ଓଡ଼ିଆ କାହାଣୀ - ପଦ୍ୟ ମାଳା' ବୋଲି କୁହାଯାଇପାରେ । ଏଥିରେ 'କଥା ସରିତ ସାଗର' ର ଅନେକ କାହାଣୀ ସ୍ଥାନ ପାଇଥିଲା । ପରବର୍ତ୍ତୀ କାଳରେ ବ୍ରଜ ନାଥ ବଡ଼ଜେନାଙ୍କ 'ଚତୁର ବିନୋଦ'ର କାହାଣୀ ଗୁଡ଼ିକୁ ଦ୍ୱିତୀୟ ଲୋକକଥା ସଂକଳନ ଭାବରେ ଗ୍ରହଣ କରାଯାଇପାରେ ।

ଲୋକକଥା ଗୁଡିକୁ ସଚେତନ ଭାବରେ ଗଦ୍ୟ ରୂପ ଦେବାର ଉଦ୍ୟମ ଉନବିଂଶ ଶତାବ୍ଦୀର ଶେଷ ପାଦରେ ହିଁ ଆରମ୍ଭ ହୋଇଥିଲା । ଏହି ସମୟରେ ପ୍ରଥମେ ରେଭରେଣ୍ଡ କ୍ୟାମ୍ପବେଲ ଓ ରେଭରେଣ୍ଡ ସେଲର ଯଥାକ୍ରମେ ସାନ୍ତାଳୀ ଗଳ୍ପ ଓ କାଶ୍ମୀରୀ ଗଳ୍ପ ସଙ୍କଳନ ପ୍ରକାଶ କରିଥିଲେ । ବିଂଶଶତାବ୍ଦୀର ଆରମ୍ଭରେ ଫେଜର ସାହେବ ''କଥା ସରିତ ସାଗର'' କାହାଣୀଗୁଡିକ ଇଂରେଜୀ ଭାଷାରେ ଅନୁବାଦ କରି ଦଶ ଖଣ୍ଡ ରେ ପ୍ରକାଶ କରିଥିଲେ । ଏହା ପରେ ଭାରତବର୍ଷର ବିଭିନ୍ନ ପ୍ରାଦେଶିକ ଭାଷାରେ ଲୋକଗଳ୍ପ ସଂଗ୍ରହ ମାନ ପ୍ରକାଶିତ ହେଲା ।

ଉନବିଂଶ ଶତାବ୍ଦୀର ଶେଷ ଭାଗରେ ଲାଲମୋହନ ଦେ''The Folk Tales of Bengal''ଗ୍ରନ୍ଥ ପ୍ରକାଶ କରିଥିଲେ । ବଙ୍ଗ ଦେଶର ଲୋକ କଥା ନାମରେ ଏହି ସଂକଳନରେ କେତେକ ଓଡିଆ ଗଳ୍ପ ଅନ୍ତର୍ଭୁକ୍ତ ହୋଇଥିବା ଲକ୍ଷ୍ୟ କରି ଗୋପାଳ ଚନ୍ଦ୍ର ପ୍ରହରାଜ ''ଉତ୍କଳ କାହାଣୀ '' ନାମରେ ଉନବିଂଶ ଶତାବ୍ଦୀ ଶେଷ ଦଶକରେ ଗୋଟିଏ ଓଡିଆ ଲୋକକଥା ସଂକଳନ ପ୍ରକାଶ କରିଥିଲେ । ଏହା ଏକୋଇଶିଟି ଗାଉଁଲି ଗଳ୍ପର

ସଂକଳନ । ଶିଶୁ ଓ ବୟସ୍କ-ଏହି ଦୁଇ ଶ୍ରେଣୀର ପାଠକମାନଙ୍କ ପାଇଁ ଭିନ୍ନ ସ୍ୱାଦର ଲୋକକଥା ଏଥିରେ ସ୍ଥାନ ପାଇଥିଲା ।

''ଉତ୍କଳ କାହାଣୀ'' ପରେ ଜଣେ ଅଜ୍ଞାତନାମା ମହିଳାଙ୍କ ଦ୍ୱାରା ସଂଗୃହିତ ଓ ଲିଖିତ ପଚିଶଟି ଲୋକ କଥାର ଆଉ ଏକ ସଂକଳନ ''କଥା ଲହରୀ'' ନାମରେ ଶ୍ରୀ ରାଘବା ନନ୍ଦ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ମଧୁସୂଦନ ରାଓ ଏ ଗଳ୍ପଗୁଡିକର ଏକ ପ୍ରଶଂସା ମୂଳକ ଭୂମିକା ଏଥିରେ ଲେଖିଥିଲେ । ୧୯୨୧ ମସିହାରେ ରାଧାଚରଣ ମହାପାତ୍ର ''ଉତ୍କଳ କାହାଣୀ ଦର୍ପଣ'' ନାମରେ ଆଉ ଏକ ଲୋକ କଥା ସଂକଳନ ପ୍ରକାଶ କରିଥିଲେ । ଏଥିରେ ''ଉତ୍କଳ କାହାଣୀ'' ଓ ''କଥା ଲହରୀ''ର ଅଧିକାଂଶ ଗଳ୍ପ ଅନ୍ତର୍ଭୁକ୍ତ ହୋଇଥିଲା । ସେହିପରି ୧୯୨୩ ମସିହାରେ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତଙ୍କ ଦ୍ୱାରା ସଂକଳିତ ଇରେଜୀ ଓଡିଆ ଲୋକ କଥା "Folk Tales of Orissa" ମଧ ଥିଲା ''ଉତ୍କଳ କାହାଣୀ'' ଓ ''କଥା ଲହରୀ''ର ଅନେକ ଗଳ୍ପର ଇଂରେଜୀ ଅନୁବାଦ ମାତ୍ର !

ପରବର୍ତ୍ତୀ କାଳରେ ଡକ୍ଟର କୁଞ୍ଜବିହାରୀ ଦାଶ ଓ ଶ୍ରୀ ଚକ୍ରଧର ମହାପାତ୍ରଙ୍କ ଉଦ୍ୟମରେ ବହୁ ଓଡିଆ ଲୋକ ଗଳ୍ପ ସଂଗୃହୀତ ହୋଇ ପ୍ରକାଶିତ ହୋଇଛି । ଏଥିରେ ଏଭଳି ଅନେକ ଗଳ୍ପ ଅଛି, ଯାହା ନବସାକ୍ଷର ମାନଙ୍କ ପାଇଁ ଏକାନ୍ତ ଉପଯୋଗୀ । ଏସବୁ ଗଳ୍ପ ଗୁଡିକର ଭାଷା ପରିବର୍ତ୍ତନ ନ କରି ବ୍ୟବହାର କରାଯାଇପାରେ କିମ୍ବା ନବସାକ୍ଷରମାନଙ୍କ ଆବଶ୍ୟକତାକୁ ଆଖିଆଗରେ ରଖି ପୁର୍ନଲିଖନ କରାଯାଇପାରେ ।

ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ''ଓଡିଆ ଲୋକଗୀତ ଓ କାହାଣୀ'' ଗ୍ରନ୍ଥର ୩୮୮ ପୃଷ୍ଠାରେ ଉଲ୍ଲେଖ କରାଯାଇଥିବା ''ସ୍ୱର୍ଗ ଇଣ୍ଡୁରି'' (The Story of the

fools and the bull of Shiva) ଏହି ଭଳି ଏକ ଉପଯୋଗୀ ଲୋକକଥା । ଏ ଗଳ୍ପଟି ଅନ୍ୟ ଭାବରେ ଆଦିବାସୀ ମାନଙ୍କ ମଧ୍ୟରେ ପ୍ରଚଳିତ । ମର୍ତ୍ତ୍ୟକୁ ବୁଲିଆସିଥିବା ଶିବଙ୍କ ବାହନ ବୃଷଭର ଲାଞ୍ଜ ଧରି ସ୍ୱର୍ଗକୁ ଯାଇଥିବା ପୃଥିବୀର କେତେ ଜଣ ଲୋକଙ୍କ ବୋକାମିକୁ ଅବଲମ୍ବନ କରି ଏହି କାହାଣୀଟି ରଚିତ । ସ୍ୱର୍ଗକୁ ଯିବା ବାଟରେ ସ୍ୱର୍ଗ ଇଣ୍ଡୁରିର ଆକୃତି ହାତରେ ମାପି ଦେଖାଇବାର ପ୍ରଚେଷ୍ଟା ଫଳରେ ବୃଷଭ ଲାଙ୍ଗୁଡରୁ ହାତ ଛାଡି ପୁଣି ପୃଥିବୀରେ ଖସି ପଡିବା ଘଟଣାକୁ ନେଇ ଏହି କାହାଣୀର ପରିକଳ୍ପନା ।

ଲୋଭ ଓ ନିର୍ବୋଧତା କିପରି ମଣିଷର ପତନର କାରଣ ହୁଏ— ଏହାହିଁ ହେଉଛି ଏ ଲୋକକଥାର ମର୍ମବାଣୀ । ''ସ୍ୱର୍ଗଇଣ୍ଡୁରି'' ଭଳି ବହୁ ଲୋକପ୍ରିୟ ଏବଂ ନୀତିଶିକ୍ଷା ମୂଳକ କାହାଣୀରେ ଓଡିଆ ଲୋକକଥା ସମୃଦ୍ଧ । କେବଳ ସାକ୍ଷରତାର ପ୍ରସାର ନୁହେଁ, କାହାଣୀ ଛଳରେ ଲୋକଙ୍କୁ ନୀତିଶିକ୍ଷା ଦେବାରେ ଏହିସବୁ ଲୋକକଥାର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

# ଲୋକ ସାହିତ୍ୟର ବୈଶିଷ୍ଟ୍ୟ

'ସହ-ଇତ-ଯ' ବା ଯାହା ନିଜ ସହିତ ଗତିକରେ, ତାହା ସାହିତ୍ୟ । ଲୋକ ସାହିତ୍ୟ କହିଲେ ଯାହା ଲୋକମାନଙ୍କ ସହ ଗତି କରେ, ଏଇ କଥାକୁ ହିଁ ବୁଝାଇବ । ଗଦ୍ୟ ଓ ପଦ୍ୟ ସାହିତ୍ୟର ଦୁଇଟି ମୁଖ୍ୟ ବିଭାଗ । ଲୋକ ସାହିତ୍ୟକୁ ସେହିପରି ଦୁଇଟି ବିଭାଗରେ ବିଭକ୍ତ କରି ଆଲୋଚନା କଲେ ଯଥାର୍ଥ ହେବ । ଲୋକ ସାହିତ୍ୟର ପଦ୍ୟ ବିଭାଗରେ ଢଗ ଢମାଳି, ଆପ୍ତ ବଚନ, ଓ ଗୀତ ଅନ୍ତର୍ଭୁକ୍ତ । ଗଦ୍ୟ ବିଭାଗଟିରେ ଗଳ୍ପ, କିମ୍ବଦନ୍ତୀ, ମନ୍ତ୍ର, ଛୋଟ ଛୋଟ ନାଟକ, ପାଲା, ସୁଆଙ୍ଗ ଅନ୍ତର୍ଭୁକ୍ତ । କିନ୍ତୁ ଏଇ ରଚନାଗୁଡିକ ଲିଖିତ ଆକାରରେ ନଥିଲା, ମୁହଁରୁ ମୁହଁକୁ, ଶ୍ରୁତିରୁ ଶ୍ରୁତିକୁ ଗତି କରୁଥିଲା ଠିକ୍ ବେଦପରି । ଏଥିପାଇଁ ଏହାକୁ ମାନବ ସମାଜର ଅଲିଖିତ ଇସ୍ତାହାର ବୋଲି କୁହାଯାଏ ।

ଲୋକ ସାହିତ୍ୟ ମଣିଷର ଜନ୍ମ ସମୟରୁ ତାର ଅଲକ୍ଷ୍ୟରେ ତା ସହିତ ପାଦ ମିଳାଇ ଚାଲିଛି । ମାନବର ଧର୍ମ, ସଂସ୍କୃତି, ଶିକ୍ଷା ଓ ସାମାଜିକତା ଇତ୍ୟାଦି ଏଥିରେ

ରୂପାୟିତ ହୋଇଛି । କିନ୍ତୁ ଏହି ଲୋକ କଥା ବାସ୍ତବଧର୍ମୀ ନୁହେଁ । ଏଥିରେ ବୃକ୍ଷଲତା ଚାଲନ୍ତି, କଥା କହନ୍ତି । ପଶୁପକ୍ଷୀ ବି କଥା କୁହନ୍ତି । ସିଦ୍ଧ, ଗନ୍ଧର୍ବ, ଯକ୍ଷ ଓ ରାକ୍ଷସ ଆଦି ଏହାର ଚରିତ୍ର । ଏହାର ସ୍ଥାନ କେବଳ ଏ ପୃଥିବୀ ନୁହେଁ । ଆକାଶ ପାତାଳ ସବୁଠିକୁ ମାନବ ମନ ପବନ ଘୋଡାଚଢି ଯାତାୟତ କରିପାରେ । ତେଣୁ ଏ ଗଳ୍ପଗୁଡିକ ରୋମାଞ୍ଚ କର ଏବଂ ସାର୍ବଜନୀନ । ଏଥିରେ ଶିଶୁଠାରୁ ବୁଢାଯାଏ ସବୁ ବୟସର ଲୋକଙ୍କ ପାଇଁ ଖୋରାକ ଥାଏ ।

ମନୋରଂଜନ ସାହିତ୍ୟର ଧର୍ମ । କିନ୍ତୁ ଲୋକ ସାହିତ୍ୟର ଧର୍ମ କେବଳ ମନୋରଂଜନ ନୁହେଁ । ଏହାର ଧର୍ମ ସାହିତ୍ୟ ମାଧମରେ ନୀତି ଶିକ୍ଷା ପ୍ରଦାନ । ଏହା ପରିଣତି ସାପେକ୍ଷ । ସତ୍‌କର୍ମୀ ଏଥିରେ ପୁରସ୍କୃତ ହୁଏ । କିନ୍ତୁ ପାପୀ ନିଶ୍ଚୟ ଦଣ୍ଡିତ ହୁଏ । ତଳେ କଣ୍ଟା ଉପରେ କଣ୍ଟା ଦେଇ ଆମେ ପାପୀକୁ ପୋତିପକାଉ ।

ଶିକ୍ଷା କହିଲେ କେବଳ ଅକ୍ଷର ଶିକ୍ଷାକୁ ବଝାଏ ନାହିଁ । ଚରିତ୍ର, ସାହସିକତା, ଦୁଃଖୀର ଦୁଃଖ ହରଣ କରିବା, ବିପନ୍ନକୁ ଉଦ୍ଧାର କରିବା, ପିତା ମାତା ଗୁରୁଜନଙ୍କୁ ଅମାନ୍ୟ ନ କରିବାର ଇତ୍ୟାଦି ଶିକ୍ଷା ଲୋକ ସାହିତ୍ୟରୁ ମିଳିଥାଏ ।

ଲୋକ ସାହିତ୍ୟ ଅତ୍ୟନ୍ତ ରସାଳ । ସ୍ମରଣାତୀତ କାଳରୁ ଏହା ମାନବ ସଭ୍ୟତାର ଐତିହ୍ୟକୁ ବହନ କରିଆସୁଛି । ଏହା ମାନବର କଳାତ୍ମକ ବିକାଶର ମାଧ୍ୟମ ମଧ । ଉଦାହରଣ ସ୍ୱରୂପ କଥାଟିଏ - ଦୁଆରେ ଅପରାଜିତା ଗଛ ଥିଲେ ଦୁଃଖ ପଡ଼େ ନାହିଁ ବୋଲି କୁହାଯାଏ । କିନ୍ତୁ କୌଣସି ସ୍ଥାନରେ ତାର ବ୍ୟତିକ୍ରମ ଦେଖା ଦେଇଛି । ତେଣୁ ଗୃହମାଲିକ ଅପରାଜିତା ବୃକ୍ଷକୁ ପଚାରୁଛନ୍ତି —

"ଆଲୋ ଆଲୋ ଅପରାଜିତା
ତୁ ଥାଉଁ କିଆଁ ଏତିକି ଚିନ୍ତା ?"

ଅପରାଜିତା ଉତ୍ତର ଦେଇଛି —

'କେଁ କବାଟ,
ଚିତ୍ର ବିରାଟ,
ରଙ୍ଗା ପୋଇ,
ବୋହୂର ଭାଇ,
ବୁଢ଼ୀମା ବସେ ତା' ମୁଣ୍ଡ ଆଁଉସୀ,
ମୁଁ କି କରିବି ଦୁଆରେ ବସି ।'

ଏଇ ଉକ୍ତିଟିକୁ ଦେଖାଯାଉ । 'କେଁ କବାଟ' ଅର୍ଥାତ୍ ଯେଉଁ ଘରେ କବାଟ କେଁ କେଁ ହୁଏ । ଚିତ୍ର ବିରାଟ- ଅର୍ଥ ଛଉକା ବିଲେଇ ଯାହା ଘରେ ଅଛି, ରଙ୍ଗା ପୋଇ ଅର୍ଥାତ୍ ଯେ ଘରେ ନାଲି ପୋଇ ମଡ଼େଇଛି, ବୋହୂର ଭାଇ ଅର୍ଥାତ୍ ଯାହା ଘରେ ବୋହୂର ଭାଇ ରହିଛି ଏବଂ ଯାହାଘରେ ବୁଢ଼ୀମା' ମୁଣ୍ଡରେ ହାତଦେଇ ବସେ, ସେ ଘରେ ଅଘଟଣ ଘଟେ । ଏହା ଏକ ଶିକ୍ଷଣୀୟ ଲୋକୋକ୍ତି । ଏହା ନୀତି କଥାରେ ପରିପୂର୍ଣ୍ଣ । ଏହାର ସର୍ଜନା କଳାତ୍ମକ ପ୍ରାଣର ପରିଚାୟକ । ତେଣୁ କିଏ ଏହାର ନିର୍ମାତା, ଏ ବିଚାର ଗୌଣ । ସାଧାରଣତଃ ନାରୀମାନେ ହିଁ ଏହି ପ୍ରକାର ବକ୍ରୋକ୍ତିର ବ୍ୟବହାରକୁ ଆପଣାର କରିଥାଆନ୍ତି ।

ଏମିତି ଏକ ପ୍ରୀତିପୂର୍ଣ୍ଣ ବର୍ଣ୍ଣନା ମାତ୍ର ଦୁଇ ଧାଡ଼ିରେ ରଚିତ ହୋଇ ଥିବାର

ଦୃଷ୍ଟି ଗୋଚର ହୁଏ । ସ୍ୱାମୀ ଓ ସ୍ତ୍ରୀ ଦୁହିଙ୍କର କଳହ ହୋଇଛି । ଦୁହିଙ୍କର କଥାବାର୍ତ୍ତା ବନ୍ଦ । ସ୍ତ୍ରୀ ଯାଇଛି ନଈକି ଗାଧୋଇ । ଦେଖିଲା ବେଳକୁ ତା ଶାଶୁକୁ କୁମ୍ଭୀର ନେଇ ଯାଉଛି । ସେ ଘରକୁ ଦୌଡ଼ି ଆସିଛି । ଚାଳକୁ, ବାଡ଼କୁ ଦେଖାଇ କହୁଛି -

''କହିବୁଟି ଘର ପୁଅଙ୍କୁ
ନଈରେ ଯେଉଁ ନମ ନମକା ନେଇଯାଉଛି ତା ମାଆଙ୍କୁ ।''

ଏଇ ଉକ୍ତିଟି ଭିତରେ ଏକ ଉଚ୍ଚକୋଟୀର ସାହିତ୍ୟିକ ବ୍ୟଞ୍ଜନା ଦେଖାଯାଏ । ନାରୀଟିର ଶାଶୁଙ୍କ ନାଁ କୁମ । ତେଣୁ ଆମ ଓଡ଼ିଆ ବ୍ୟବସ୍ଥା ଅନୁସାରେ ସେ ନାଁ ବଂଚେଇବ । ସେ କୁମ୍ଭୀର କହିବ କିପରି ? ତେଣୁ କୁମ୍ଭୀରକୁ 'ନଈରେ ଯୋଉ ନମନମକା' ବୋଲି କହିଛି । ଏହି ଭଳି ଲୋକଗୀତ ମଧ୍ୟରେ ମାନବିକ ଚେତନାର ବିକାଶ ଘଟେ ।

କଥାଟିଏ ଅଛି -

'' ଆବୁ ତାବୁ ଗୁଲି ସୁତା
ମା ବୋଇଲେ ପଢ଼ରେ ପୁତା
ପଢ଼ିଲେ ଗୁଣିଲେ ଦୁଧଭାତ
ନ ପଢିଲେ ଠେଙ୍ଗା ନାତ - ''

ପାଠ ପଢ଼ିଲେ ଦୁଧ ଭାତ ଖାଇବାକୁ ଦେବେ । ନ ପଢ଼ିଲେ ଦେବେ ଠେଙ୍ଗା ନାତ । ପାଠ ପଢ଼ା ପ୍ରତି ମା'ର ସମ୍ମାନବୋଧ ଦ୍ରଷ୍ଟବ୍ୟ । ନିର୍ଣ୍ଣୟ ମଧ୍ୟ ଚମତ୍କାର । ପାଠ ପଢ଼ିଲେ ଦିବ୍ୟ ଅନ୍ନ ଭୋଜନ ଦେବେ । ନଚେତ୍ ଠେଙ୍ଗା ପାହାର ଦେବେ । ପାଠ

ପଢ଼ିଲେ ମାନବର ମୂର୍ଖତା ତଥା ଅଜ୍ଞାନତା ଦୂର ହୁଏ । ସେଥିପାଇଁ ପାଠ ପଢ଼ିବା ଏକାନ୍ତ କାମ୍ୟ । ଏଥିରେ ପାଠ ପଢ଼ିବା ପାଇଁ ଏକ ନିର୍ଦ୍ଦିଷ୍ଟ ଆଦେଶ ଦିଆ ଯାଇଛି । କେଉଁ କାଳରୁ ଏହାର ସୃଷ୍ଟି ବା କିଏ ଏହାର ସୃଷ୍ଟିକର୍ତ୍ତା - ଏ ବିଷୟରେ କେହି ପ୍ରଶ୍ନ କରେ ନାହିଁ । ଏହାକୁ ବ୍ୟଞ୍ଜନା ଧର୍ମୀ ରଚନା ବୋଲି କୁହାଯାଇ ପାରେ ।

ସେହିପରି —

" ହଳଦୀ ଗୁରୁ ଗୁରୁ ରାମ ରାଉତ
ଘରେ ଭାତ ନାହିଁ କୁଟୁମ୍ବ ବହୁତ "

ଏ ପଂକ୍ତି ଦୁଇଟି ଶୁଣିବାକୁ ମଧୁର ଲାଗେ । ଭାଷା ସରଳ ଅର୍ଥ କି ଚମତ୍କାର ! ରାମ ରାଉତର ବହୁକୁଟୁମ୍ବ । ହେଲେ ଘରେ ଭାତ ନାହିଁ । ଦାରିଦ୍ର୍ୟ ଭିତରେ ସେ ସଢୁଛି । ଏହାର କାରଣ ବହୁକୁଟୁମ୍ବ । ତେଣୁ ଏଠାରେ ଅଜ୍ଞାନତା ବଶତଃ ଅଧିକ ସନ୍ତାନ ସୃଷ୍ଟି ଉପରେ ମନ୍ତବ୍ୟ କରାଯାଇଛି । ଜନ୍ମ ନିୟନ୍ତ୍ରଣ ନିହାତି ଆବଶ୍ୟକ । କଥାଟିକୁ କିପରି ମାର୍ଜିତଭାବରେ ସରଳ ଭାଷାରେ ପ୍ରକାଶ କରାଯାଇଛି ? ଏଇ ଦୁଇ ଧାଡ଼ିରେ ମଧ କାବ୍ୟିକ ବ୍ୟଞ୍ଜନା ଦେଖାଯାଏ । ଏହିସବୁ ଲୋକ ସାହିତ୍ୟ କାଳଜୟୀ, ଆବେଦନରେ ପରିପୂର୍ଣ୍ଣ ।

ଲୋକ ସାହିତ୍ୟରେ ବ୍ୟଞ୍ଜନା, ସାହିତ୍ୟ କଳା ଯେତିକି ମିଳେ ତା ଅପେକ୍ଷା ଅଧିକ ଦେଖାଯାଏ କୁସଂସ୍କାର ଓ ଅନ୍ଧ ବିଶ୍ୱାସ । ଏ ଦୁଇଟି ସମାଜର କଳଙ୍କ । ତେଣୁ ଏହାକୁ ଯଥାସମ୍ଭବ ବିଦୂରିତ କରିବାକୁ ହେବ । ଲୋକ ସାହିତ୍ୟରୁ ଏଇ ଅହିତକର ଗୁଣଗୁଡ଼ିକ ଦୂର କରି ତାର ସାହିତ୍ୟିକ ବିକାଶ ପାଇଁ ବାତାବରଣ ସୃଷ୍ଟିକରିବା ବିଧେୟ ।

# ଲୋକସାହିତ୍ୟ ମାଧ୍ୟମରେ ଜନଶିକ୍ଷାର ପ୍ରସାର

ବିଶେଷଭାବେ ଓଡ଼ିଶା ଏକ ଗାଆଁର ରାଜ୍ୟ । ଏହାର ଅଧିକାଂଶ ଲୋକ ଗାଉଁଲି । ବର୍ତ୍ତମାନ ସମୟରେ ଲୋକେ ଗାଆଁଛାଡ଼ି ନାନା ସୁବିଧା ସୁଯୋଗ କାରଣରୁ ସହର ମାନଙ୍କରେ ବସବାସ କରିବାକୁ ଚାହୁଁଥିଲେ ମଧ୍ୟ ସେମାନଙ୍କର ମୂଳ ରହିଛି ଗାଆଁରେ । ଗାଉଁଲି ଜୀବନର ହାବଭାବ, ଚାଲିଚଳନ ଓ ଭାଷା ହେଉଛି ଓଡ଼ିଶାର ଅସଲ ପରିଚୟ । ଏହାର ଭାଷା ଏବଂ ସାହିତ୍ୟରେ ତେଣୁ ଗାଆଁର ଛାପ ପରିଷ୍କାର ।

ଓଡ଼ଶାର ଅସଂଖ୍ୟ ଗାଆଁ ଏବଂ ଗାଉଁଲି ଜୀବନର ପରିସର ଭିତରେ ଗଢ଼ିଉଠିଥିବା ଅଗଣିତ ରସୁଆଳ ଏବଂ ସାର୍ବଜନୀନ ଅଭିବ୍ୟକ୍ତି ହେଉଛି ଏହାର ଲୋକସାହିତ୍ୟ । ଲୋକସାହିତ୍ୟ ହିଁ ଓଡ଼ିଆ ଜାତିର ଆତ୍ମଚରିତ । ଅତଏବ ଜନଶିକ୍ଷାର ପ୍ରଚାର ଓ ପ୍ରସାର ପାଇଁ ଲୋକସାହିତ୍ୟ ଯେ ଅତ୍ୟନ୍ତ ମୂଲ୍ୟବାନ - ଏ କଥା ବୁଝାଇ କହିବା ଅନାବଶ୍ୟକ ।

"ଜନଶିକ୍ଷା" ଅଣସାକ୍ଷର, ସାକ୍ଷର ଓ ନବସାକ୍ଷର ମାନଙ୍କ ଭିତରେ ଶିକ୍ଷାସଚେତନତା ବଢ଼େଇବା ପାଇଁ ଉଦ୍ଦିଷ୍ଟ । ଲୋକସାହିତ୍ୟ ସମାଜର ବିଭିନ୍ନ ବର୍ଗ ଓ ଶ୍ରେଣୀ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ସାହିତ୍ୟର ଏହି ମାଧ୍ୟମରେ ହିଁ ଯେକୌଣସି ବାର୍ତ୍ତା ସହଜ ଏବଂ ସାବଲୀଳଭାବେ ଲୋକଙ୍କ ପାଖରେ ପହଞ୍ଚାଯାଇ ପାରିବ । ତେଣୁ ଏହାକୁ ମୂଳକରି ସାକ୍ଷରତା ଭଳି ଏକ ଜରୁରୀ ଯୋଜନାକୁ କାର୍ଯ୍ୟକାରୀ କରାଯାଇ ପାରିଲେ, ଶିକ୍ଷାପ୍ରତି ଜନସାଧାରଣଙ୍କର ଯେ କେବଳ ଆଗ୍ରହ ବଢ଼ିବ ସେକଥା ନୁହେଁ, ଅଧିକନ୍ତୁ ଲୋକେ ନିଜ ପରମ୍ପରା ଓ ସମାଜପ୍ରତି ଅନ୍ତରଙ୍ଗତା ଅନୁଭବ କରିବେ ।

ଲୋକସାହିତ୍ୟର ଭାଷା ସରଳ , ସହଜ ଏବଂ ଅକୃତ୍ରିମ । ଏହାର ଭାବ ସାର୍ବଜନୀନ । ଏଥିରେ ଥିବା ବିଷୟବସ୍ତୁ ସାଧାରଣ ଜୀବନର ବିଷୟବସ୍ତୁ । ମଣିଷ ନିରକ୍ଷର ହେଲେବି ପିଲାଟି ଦିନରୁ ଲୋକସାହିତ୍ୟର ଭାଷା , ଭାବ ଓ ବିଷୟବସ୍ତୁ ସହିତ ସେ କାନମାଧ୍ୟମରେ ପରିଚିତ । ତେଣୁ ନବସାକ୍ଷର ମାନଙ୍କପାଇଁ ପ୍ରସ୍ତୁତ ହେଉଥିବା ଲେଖା ଓ ପାଠ୍ୟ ମାନଙ୍କରେ ସେସବୁର ବର୍ଣ୍ଣନା ରହିଲେ, ତାହା ପଢ଼ିବାକୁ ସୁଖପାଠ୍ୟ ହୋଇଥାଏ । ଲୋକସାହିତ୍ୟର ଲେଖା ତେଣୁ ପାଠକକୁ ପାଠ୍ୟଭଳି ମନେହେବ ନାହିଁ । ପ୍ରତିଟି ଅକ୍ଷର ତାକୁ ମନେହେବ ଚିହ୍ନା ଚିହ୍ନା ଏବଂ ପ୍ରତିଟି ଭାବ ତାକୁ ଲାଗିବ ଆପଣାର ଭଳି ।

ଲୋକସାହିତ୍ୟ କହିଲେ ଆମେ ଢ଼ଗ,ଢ଼ମାଳି, ନାଁଦିଆ, ପହଳି, ଲୋକକଥା, ଲୋକଗୀତ , ପୁରାଣ, ଆଖ୍ୟାନ,କିମ୍ବଦନ୍ତୀ ଆଦିକୁ ଏହାର ପରିସର ଭୁକ୍ତ କରିପାରିବା । ଲୋକସାହିତ୍ୟର ଲୋକଗୀତ ମାନଙ୍କରେ ଥିବା ସ୍ୱର ମଧ୍ୟ

ଗଣଜୀବନର ଏକ ଅଂଶବିଶେଷ । ଉଦାହରଣସ୍ୱରୂପ ''ଟୀକାଗୋବିନ୍ଦ ଚନ୍ଦ୍ର''କୁ କେନ୍ଦରାରେ ଗାଇଲାବେଳେ ସାଧାରଣଭାବେ ଯେଉଁ ସ୍ୱରର ବ୍ୟବହାର କରାଯାଏ, ତାହା ଓଡ଼ିଆ ଗଣଚେତନାର ଏକ ବିଶେଷ ଅଙ୍ଗ । ତେଣୁ ସେଇ ସ୍ୱରରେ ଯେକୌଣସି ନୂଆ କଥାର ପ୍ରୟୋଗ, ସହଜ ଓ ସରଳଭାଷାରେ କରାଯାଇ ପାରିଲେ, ତାହା ଅଧିକ ଆବେଦନଗ୍ରାହୀ ହୋଇପାରିବ ।

ସେଇଭଳି ଆମ ଲୋକସାହିତ୍ୟର ଢ଼ଗଢ଼ମାଳି ଓ ପ୍ରବାଦ ପ୍ରବଚନ ।

ଯଥା :

'' ଖଡ଼ି ଗଲା ଗଡ଼ି ଗଡ଼ି<br>
ଆମ ସାଇର ଯେତେକ ବୁଢ଼ୀ<br>
କାଲି ଯିବେ ପାଠ ପଢ଼ି ।''

''ଚାଷ ହୁଡ଼ିଲେ ବରଷେ,<br>
ପାଠ ହୁଡ଼ିଲେ ପୁରୁଷେ ।''

''ମୂରୁଖ ପୁତ<br>
ମଲୁଖ ଭାତ<br>
ବୋଲେ ଦନାଇ<br>
ଏ ନୁହଁର ହିତ ।''

ଏଥିରେ ଥିବା ସାକ୍ଷରତାର ବାର୍ତ୍ତା ସ୍ପଷ୍ଟ । କେହି କେହି ଏସବୁକୁ ସାଧାରଣ ବୋଲି ବିଚାର କଲେ ମଧ୍ୟ ଏଭଳି କଥା ମାନ ସବୁ ଶ୍ରେଣୀର ଲୋକଙ୍କର ପ୍ରିୟ ଏବଂ ଗ୍ରାହ୍ୟ ।

ଲୋକସାହିତ୍ୟର ଲୋକକଥାମାନଙ୍କରେ ମଧ ଏଇଭଳି ଅନେକ କାହାଣୀ ଓ ଉପାଖ୍ୟାନମାନ ରହିଛି । ସେସବୁକୁ ସଂଗ୍ରହ କରି ଚିତ୍ର ସହିତ ନବସାକ୍ଷରମାନଙ୍କ ଆଗରେ ଉପସ୍ଥାପନକଲେ ତାହା ସେମାନଙ୍କୁ ବେଶ୍ ଆକୃଷ୍ଟ କରିପାରିବ ।

ଲୋକସାହିତ୍ୟ ଏକ ବଳିଷ୍ଠ ମାଧ୍ୟମ । ଏହା ଗଣଭିତ୍ତିକ , ମାତ୍ର ସାମ୍ପ୍ରତିକ ନୁହେଁ । କାରଣ ଅତୀତ ଏବଂ ପରମ୍ପରାର ମଧୁରପରିବେଶରେ ଗଢ଼ା ଓ ମୁହଁରୁ ମୁହଁକୁ ପ୍ରସାରିତ ଏ ମୌଳିକସାହିତ୍ୟ ଶତାବ୍ଦୀ ଶତାବ୍ଦୀ ଧରି ଆମର ଚିରପ୍ରବହମାନ ଜୀବନଧାରା ସହିତ ଜଡ଼ିତ ।

ଆମେ ଲୋକସାହିତ୍ୟକୁ ସାକ୍ଷରତାପ୍ରସାର ପାଇଁ ଯେତେ ଅଧିକ ବ୍ୟବହାର କରିପାରିବା ସେତେ ଭଲ । ସାକ୍ଷରତା ଆନ୍ଦୋଳନ ଲୋକସାହିତ୍ୟ ମାଧ୍ୟମରେ ଯେ ଅତି ସହଜରେ ଏହାର ଲକ୍ଷ୍ୟ ପୂରଣ କରିପାରିବ ସେଥିରେ ସନ୍ଦେହ ପ୍ରକାଶ କରିବାର ଅବକାଶ ନାହିଁ । କେବଳ ସାକ୍ଷରତା ଉପଯୋଗୀ ସେସବୁ ବିଷୟବସ୍ତୁକୁ ଠାବ କରିବା ଦରକାର ।

# ଆଦିବାସୀ ସମାଜରେ ଲୋକ ସାହିତ୍ୟ

ଓଡିଶାର ବିଭିନ୍ନ ଅଞ୍ଚଳରେ ବାଷଠୀ ପ୍ରଜାତିର ଆଦିବାସୀ ବସବାସ କରିଥାନ୍ତି । ସେମାନଙ୍କର ବାସସ୍ଥାନଗୁଡିକ ସାଧାରଣତଃ ପାର୍ବତ୍ୟାଞ୍ଚଳରେ ଅବସ୍ଥିତ ଥାଏ । ପାହାଡ଼ ଜଙ୍ଗଲରେ ସେମାନେ ଜନ୍ମହୋଇ, ତା' କୋଳରେ ଲାଳିତପାଳିତ ହୋଇ ଶେଷନିଶ୍ୱାସ ତ୍ୟାଗ କରିଥାନ୍ତି । ତେଣୁ ସେମାନଙ୍କର ସଂସ୍କୃତି ଓ ପରମ୍ପରା ଜଙ୍ଗଲ ସହ ଓତଃପ୍ରୋତଃ ଭାବେ ଜଡିତ ।

ଆଦିବାସୀମାନେ ସରଳ, ନିଷ୍କପଟ ଓ ନିରକ୍ଷର ହେଲେ ମଧ୍ୟ ଚେତନଶୀଳ ଓ ଆଧ୍ୟାତ୍ମିକବାଦୀ । ସେମାନଙ୍କ ସଂସ୍କୃତି ଓ ପରମ୍ପରା ସେମାନଙ୍କର ଜୀବନକୁ ସରସ, ସୁନ୍ଦର ଓ ଶୃଙ୍ଖଳିତ କରି ଗଢି ତୋଳିବାରେ ଯଥେଷ୍ଟ ସାହାଯ୍ୟ କରିଥାଏ ।

ଶିକ୍ଷା ହେଉଛି ସମାଜର ମାନଦଣ୍ଡ । ଏହି ଶିକ୍ଷା ବିଭିନ୍ନ ମାଧ୍ୟମରେ ପ୍ରଦାନ କରାଯାଇଥାଏ । କିନ୍ତୁ ଲୋକସାହିତ୍ୟ ମାଧ୍ୟମରେ ପ୍ରଦାନ କରାଯାଉଥିବା ଶିକ୍ଷା ଏକ ସୁସ୍ଥ ଓ ବଳିଷ୍ଠ ସମାଜଗଠନ ନିମିତ୍ତ ଯଥେଷ୍ଟ ସହାୟକ ହୋଇଥାଏ ।

ଆଦିବାସୀ ସମାଜର ଲୋକସାହିତ୍ୟ ବଡ ଉଚ୍ଚ କୋଟୀର । ଏହି ଲୋକସାହିତ୍ୟ ମାଧ୍ୟମରେ ସେମାନଙ୍କର ବିକାଶ ଘଟିଥାଏ । ବ୍ୟକ୍ତିତ୍ୱ ତଥା ପରିବାର ଓ ସମାଜର ଅଭିବୃଦ୍ଧି ପାଇଁ ଏହା ପରମ ସହାୟକ ହୋଇଥାଏ ।

'ଲୋକସାହିତ୍ୟ' ମାଧ୍ୟମରେ ଆଦିବାସୀମାନେ ଯେଉଁ ଶିକ୍ଷା ଆହରଣ କରିଥାନ୍ତି, ତାହା ଅକ୍ଷରଗତ ନହେଲେମଧ୍ୟ ବୌଦ୍ଧିକ, ତାତ୍ତ୍ୱିକ ଓ ବୈଷୟିକ । ଉନ୍ନତମାନର ଯନ୍ତ୍ରପାତି ବ୍ୟବାହାର ନକରି ନିଜର ବ୍ୟବହୃତ ସାମଗ୍ରୀଗୁଡିକରେ ସେମାନେ ଯେପରି କଳାକୌଶଳ ପ୍ରୟୋଗ କରିଛନ୍ତି, ଏହା ଦେଖିଲେ ଯେ କେହି ବିସ୍ମିତ ନହୋଇ ରହିପାରିବନି । ଏହାସେମାନଙ୍କର ବୈଷୟିକ ଜ୍ଞାନର ଏକ ପରିପ୍ରକାଶ ମାତ୍ର ।

ଆଦିବାସୀ ଲୋକସାହିତ୍ୟ କହିଲେ ସେମାନଙ୍କର ଗୀତ, ସଙ୍ଗୀତ, ନାଚ, କାହାଣୀ, ଢଗ ଢମାଳି, ପ୍ରବଚନ ଓ ମନ୍ତ୍ର-ଯନ୍ତ୍ର-ତନ୍ତ୍ର ଆଦିକୁ ବୁଝାଇଥାଏ । ଏକ ଶୃଙ୍ଖଳିତ ଜୀବନ ବିନ୍ୟାସ ନିମିତ୍ତ ଆଦିବାସୀମାନେ ଏହାକୁ ଗୁରୁତ୍ୱ ଦେଇ ଆସିଥାନ୍ତି । ଜୀବନର ପ୍ରତିପାଦରେ ସେମାନେ ଏହାକୁ ବ୍ୟବହାର କରିଆସୁଛନ୍ତି । ଆଦିବାସୀ ଭୂମିଷ୍ଠ ହେବା ପରଠାରୁ ଶେଷନିଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଏହାର ଉପଯୁକ୍ତ ପ୍ରୟୋଗ କରିଥାଏ । ଫଳତଃ ସେ ଗୋଟିଏ ସୁଖ ଓ ସମୃଦ୍ଧିମୟ ଜୀବନ ଲାଭ କରି ପାରିଥାଏ ।

ଆଦିବାସୀ ଧାଙ୍ଗ୍‌ଡା ଓ ଧାଙ୍ଗ୍‌ଡୀ (ଯୁବକ ଓ ଯୁବତୀ) ମାନେ ସଙ୍ଗୀତ ପ୍ରିୟ ବିଭିନ୍ନ ମହତ୍ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ନିମିତ୍ତ ସେମାନେ ଗୀତ ବୋଲିଥାନ୍ତି ଓ

ପରିଶେଷରେ ସଫଳ ମଧ୍ୟ ହୋଇଥାନ୍ତି । ସଙ୍ଗୀତର ପ୍ରଭାବ ଫଳରେ ଉଭୟ ଶାରୀରିକ କ୍ଳାନ୍ତି ଓ ମାନସିକ ବ୍ୟଥା ଦୂରୀଭୂତ ହୋଇଥାଏ । ଧାଙ୍ଗଡା ଓ ଧାଙ୍ଗଡୀ ମାନଙ୍କର ପ୍ରତିଯୋଗିତାମୂଳକ ସଂଗୀତ ସେମାନଙ୍କୁ ଉପଯୁକ୍ତ ଜୀବନସାଥୀ ମନୋନୀତ କରିବାରେ ସାହାଯ୍ୟ କରିଥାଏ । ସଙ୍ଗୀତ ମାଧ୍ୟମରେ କନ୍ୟା ନିଜର ଦୁଃଖ ଓ ଯନ୍ତ୍ରଣାକୁ ପିତାମାତା ଓ ପରିବାରବର୍ଗଙ୍କ ନିକଟରେ ପରିପ୍ରକାଶ କରିଥାଏ । ସଙ୍ଗୀତ ମାଧ୍ୟମରେ ସବୁଦିନ ପାଇଁ ଗାଁ ଛାଡି ଚାଲିଯାଉଥିବା ଝିଅକୁ ମଧ୍ୟ ସାନ୍ତ୍ୱନା ଓ ଆଶ୍ୱାସନା ମିଳିଥାଏ । ଜମିବାଡି କାମ କଲାବେଳେ ପରିଶ୍ରମଜନିତ କ୍ଳାନ୍ତି ମେଣ୍ଟନ ଓ କାମକୁ ଶୀଘ୍ର ଶେଷ କରିବା ପାଇଁ ଆଦିବାସୀମାନେ ସମବେତ ସଙ୍ଗୀତ ଗାନ କରିଥାନ୍ତି । ପୁନଶ୍ଚ ରୁଷ୍ଟ ଦେବାଦେବୀଙ୍କୁ ତୃପ୍ତି କରିବା ନିମିତ୍ତ ଧର୍ମୀୟଧାରାରେ ଗୀତ ପରିବେଷଣ କରାଯିବା ଆଦିବାସୀ ସମାଜରେ ବିରଳ ନୁହେଁ । ଗୀତ ଦ୍ୱାରା ଗୋଟିଏ ନବଜାତ ଶିଶୁର କାନ୍ଦଣାକୁ ନିବୃତ କରି ଦିଆଯାଉଥିବାବେଳେ ଜଣେ ବୟସ୍କ ଜ୍ଞାନପ୍ରାପ୍ତ ଲୋକର ହୃଦୟକୁ ଆକର୍ଷିତ ଓ ବିକର୍ଷିତ କରିଦିଆଯାଇଥାଏ ।

ସର୍ବୋପରି ଆଦିବାସୀ ସଂଗୀତର ସମ୍ମୋହନ ଶକ୍ତି ଦ୍ୱାରା ଅସାଧ୍ୟ ସାଧନ କରାଯାଇଥାଏ । ଆବଶ୍ୟକତାକୁ ଆଖିଆଗରେ ରଖି ଆଦିବାସୀମାନେ ଏକଶହରୁ ଉର୍ଦ୍ଧ୍ୱପ୍ରକାର ସଙ୍ଗୀତ ଜୀବନର ବିଭିନ୍ନ କ୍ଷେତ୍ରରେ ପରିବେଷଣ କରିଥାନ୍ତି ।

ଗୀତ ଓ ସଙ୍ଗୀତ ବ୍ୟତୀତ ଗଳ୍ପ ଓ କାହାଣୀ ମାଧ୍ୟମରେ ଆଦିବାସୀମାନେ ମଧ୍ୟ ସୁସ୍ଥ ସାମାଜିକ ଚଳଣି ସଂପର୍କରେ ଅବଗତ ହୋଇଥାନ୍ତି । ବୟସ୍କ ଓ ଅଭିଜ୍ଞ ବ୍ୟକ୍ତିମାନେ ଅନ୍ୟମାନଙ୍କୁ ଆଦିବାସୀମାନଙ୍କର ପବିତ୍ର ସଂସ୍କୃତି ଓ ପରମ୍ପରା ସଂପର୍କରେ

ଗଳ୍ପ ଓ କାହାଣୀ ଛଳରେ ବ୍ୟକ୍ତ କରିଥାନ୍ତି । ଏହି ଗଳ୍ପ ଓ କାହାଣୀ ଗୁଡିକରେ ନୀତିଶିକ୍ଷା ପରିପୂର୍ଣ୍ଣଥାଏ । ପୂର୍ବକାଳର ଲୋକମାନଙ୍କର ରୀତିନୀତି ଓ ଆଚାର ବ୍ୟବହାର ସଂପର୍କୀୟ 'କଥାନୀ' ଗୁଡିକ ଶୁଣି ଆଦିବାସୀମାନେ ଏହାକୁ ଅନୁସରଣ କରିଥାନ୍ତି । ଗଳ୍ପ ମାଧ୍ୟମରେ ବର୍ଣ୍ଣିତ ପାରମ୍ପରିକ ରୀତିନୀତି ଗୁଡିକ ଆଦିବାସୀମାନଙ୍କର ଚରିତ୍ରଗଠନ ଦିଗରେ ମାର୍ଗ ପ୍ରଦର୍ଶକ ହୋଇଥାଏ । ଏହାକୁ ଉଲଂଘନ କଲେ ବ୍ୟକ୍ତିଗତ ଓ ସାମୂହିକ ଜୀବନ ଦୁର୍ବିସହ ହୋଇପଡିବାର ଆଶଙ୍କାକରି ଆଦିବାସୀମାନେ ପୂର୍ବରୀତିନୀତିକୁ କାୟ ମନୋବାକ୍ୟରେ ପାଳନ କରିଚାଲିଥାନ୍ତି ।

ଢଗଢମାଳି ଓ ପ୍ରବଚନଗୁଡିକ ମଧ୍ୟ ଆଦିବାସୀମାନଙ୍କର ଜୀବନକୁ ସରସମୟ କରି ଗଢି ତୋଳିବାରେ ଯଥେଷ୍ଟ ସହାୟକ ହୋଇଥାଏ । କୌଣସି ଆଦିବାସୀ ଯଦି ବିପଥଗାମୀ ହୁଏ ବା ଅସାମାଜିକ କାର୍ଯ୍ୟରେ ଲିପ୍ତରହେ, ତେବେ ବିଭିନ୍ନ ଢଗଢମାଳି ବା ପ୍ରବଚନ ତା ଉଦ୍ଦେଶରେ ପ୍ରୟୋଗ କରିବାଦ୍ୱାରା ସେ ଲଜ୍ଜା ଅନୁଭବ କରେ ଓ ପୁଣି ଠିକ୍ ରାସ୍ତାକୁ ଚାଲିଆସିଥାଏ । ବିଭିନ୍ନ ଢଗଢମାଳି ଦ୍ୱାରା ଅନ୍ତର୍ନିହିତ ସୁପ୍ତଶକ୍ତିକୁ ଜାଗ୍ରତ କରିହୁଏ । ଭଲକାମ କରୁଥିବା ଆଦିବାସୀ ପ୍ରତି ଢଗଢମାଳି ବା ପ୍ରବଚନ ପ୍ରୟୋଗ କରି ତା'ମନକୁ ଉତ୍ସାହିତ କରି ଦିଆଯାଉଥିବାବେଳେ ମନ୍ଦକାମ କରୁଥିବା ଆଦିବାସୀ ପ୍ରତି ଏହା ପ୍ରୟୋଗ କରି ତାକୁ ଲଜ୍ଜିତ ଓ ନିରୁତ୍ସାହିତ କରିବା ସଙ୍ଗେ ସଙ୍ଗେ ମନ୍ଦକାର୍ଯ୍ୟରୁ ନିବୃତ୍ତ କରାଯାଇ ପାରିଥାଏ । ତେଣୁ ସାକ୍ଷରତା ହାସଲ ଦିଗରେ ଢଗଢମାଳି ଓ ପ୍ରବଚନ ଗୁଡିକ ଆଦିବାସୀମାନଙ୍କୁ ଯଥେଷ୍ଟ ସାହାଯ୍ୟ କରିଥାଏ ।

ନାଚ ଓ ବାଦ୍ୟ ଦ୍ୱାରା ମଧ୍ୟ ଆଦିବାସୀମାନେ ଗଭୀରଭାବରେ ଅନୁ ପ୍ରାଣିତ ହୋଇଥାନ୍ତି । ସେମାନଙ୍କ ସମୃଦ୍ଧିବନ୍ତ ଜୀବନ ପାଇଁ ଏହା ମଧ୍ୟ ଅନୁରୂପ ପ୍ରଭାବ ସୃଷ୍ଟି କରିପାରିଥାଏ । ଏହାଦ୍ୱାରା ସେମାନଙ୍କର ଶ୍ରମଜନିତ କ୍ଲାନ୍ତି ଅପନୋଦନ ହେବା ସଙ୍ଗେ ସଙ୍ଗେ ଶାରୀରିକ ଶକ୍ତି ଓ ମନୋବଳ ବୃଦ୍ଧି ପାଇଥାଏ । ନାଚ ଓ ବାଦ୍ୟ ଦ୍ୱାରା ଦେବଦେବୀମାନେ ତୁଷ୍ଟ ହୋଇଥାନ୍ତି । ଫଳତଃ ଆଦିବାସୀ ସୁଖଶାନ୍ତିରେ ଜୀବନ ଅତିବାହିତ କରିଥାଏ । ଆଦିବାସୀ ବେଜେଣୀ (କାଳିସୀ) ନାଚିଲେ, ତା ଶରୀରରେ ଦେବତା ବିରାଜମାନ କରନ୍ତି ଓ ଆଦିବାସୀମାନଙ୍କର ଦୋଷତ୍ରୁଟିକୁ ଦର୍ଶାଇଥାନ୍ତି । ତେଣୁ ଆଦିବାସୀ ସଚେତନଶୀଳ ହୋଇଥାଏ ।

ଆଦିବାସୀ ଜୀବନକୁ ଶୃଙ୍ଖଳିତ କରି ଗଢିବାରେ 'ମନ୍ତ୍ର ଯନ୍ତ୍ର ତନ୍ତ୍ର' ର ମଧ୍ୟ ଯଥେଷ୍ଟ ଅବଦାନ ରହିଛି । ଆଦିବାସୀ ପୂଜକମାନେ ଦେବଦେବୀଙ୍କ ତୃପ୍ତି ନିମିତ୍ତ ଏହା ପାଠ କରିଥାନ୍ତି । ସେମାନଙ୍କର ମନ୍ତ୍ରଗୁଡିକ ଗୀତ ଆକାରରେ ବୋଲା ନ ଯାଇ କଥା ଆକାରରେ କୁହାଯାଇଥାଏ । ଏହା ମୁଖ୍ୟତଃ ଦେବଦେବୀମାନଙ୍କ ସଂପର୍କରେ ରଚିତ । କେଉଁ ପର୍ବ ପର୍ବାଣୀ ବା ପୂଜା ଅବସରରେ ସେମାନେ ଆଦିବାସୀମାନଙ୍କଠାରୁ କି ପ୍ରକାର ଭକ୍ତି ଓ ପୂଜା ଚାହାନ୍ତି, ତାହା ବିଶଦ ଭାବରେ ମନ୍ତ୍ର ମାଧ୍ୟମରେ ପାଠ କରାଯାଇଥାଏ । ମନ୍ତ୍ର ଯନ୍ତ୍ରର ପ୍ରଭାବରେ ଆଦିବାସୀ ସମାଜରେ ଦୁର୍ଭିକ୍ଷ, ଅନଟନ, ମହାମାରୀ ଆଦି ବିପ୍ୱାତମାନ କେତେକାଂଶରେ ଦୂରିଭୂତ ହୋଇଥାଏ । ମନ୍ତ୍ର, ଯନ୍ତ୍ର ଓ ତନ୍ତ୍ରର ପ୍ରଭାବରେ ଲୋକମାନେ ବିଭିନ୍ନ ରୋଗରୁ ମୁକ୍ତି ପାଇଥାନ୍ତି । ଆଦିବାସୀ ଲୋକବୈଦ୍ୟ ଜଙ୍ଗଲରୁ ବିଭିନ୍ନ ଚେରମୂଳି ଔଷଧ ସଂଗ୍ରହ କରି ଆଦିବାସୀମାନଙ୍କୁ

ରୋଗମୁକ୍ତ କରିଥାଏ । ପୁନଶ୍ଚ ଆଦିବାସୀ ଦିଶାରୀ ଆକାଶର ତାରା ଓ ନକ୍ଷତ୍ରଙ୍କୁ ଦେଖି ଶୁଭାଶୁଭ ନିର୍ଣ୍ଣୟ କରିଥାଏ , କେଉଁ କାମ କରଣୀୟ ଓ କେଉଁକାମ ଅକରଣୀୟ ତାହା ସ୍ପଷ୍ଟ କରିଦେଇଥାଏ ।

ପ୍ରତ୍ୟେକ ଆଦିବାସୀ ଗ୍ରାମରେ ଗୋଟିଏ ଗୋଟିଏ 'କୋଠଘର' ରହିଥାଏ । କେତେକ ଆଦିବାସୀ ସଂପ୍ରଦାୟର ଉଭୟ ଅବିବାହିତ ଯୁବକ ଓ ଅବିବାହିତା ଯୁବତୀମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ୱତନ୍ତ୍ର ଘରମାନ ତିଆରି କରାଯାଇଥାଏ । ଶିଶୁଟିଏ ଭୂମିଷ୍ଠ ହେଲାପରେ ପରିବାରରେ ପିତାମାତାଙ୍କ ଦ୍ୱାରା ଲାଳିତପାଳିତ ହୋଇ ବଢୁଥାଏ । ତେଣୁ ଜୀବନଗଠନ ନିମିତ୍ତ ପ୍ରଥମଶିକ୍ଷା ସେ ପରିବାରରୁ ପ୍ରାପ୍ତ ହୋଇଥାଏ । ପରିବାରରେ ପିତାମାତା ଓ ପରିବାର ବର୍ଗ ତାକୁ ପ୍ରାଥମିକ ଶିକ୍ଷା ପ୍ରଦାନ କରିଥାନ୍ତି । କ୍ରମଶଃ ସେ ଗ୍ରାମର ବିଭିନ୍ନ ଅନୁଷ୍ଠାନକୁ ଯାଇ ଆନୁଷ୍ଠାନିକ ରୀତିନୀତି ସଂପର୍କରେ ଅବଗତ ହୋଇଥାଏ । ଗ୍ରାମ୍ୟ ଅନୁଷ୍ଠାନ ଗୁଡିକ ଲୋକସାହିତ୍ୟ ଚର୍ଚ୍ଚାର ପୀଠସ୍ଥଳୀ । ଏଠାରେ ଲୋକସାହିତ୍ୟ ମାଧ୍ୟମରେ ତର୍କ ବିତର୍କ, ଆଲୋଚନା ସମାଲୋଚନା ଓ ଭଲମନ୍ଦ ବିଚାର କରାଯାଇଥାଏ । ଆଇନକାନୁନ ଓ ନ୍ୟାୟ ନିଶାପ ଦ୍ୱାରା ଦୋଷୀସାବ୍ୟସ୍ତ କରି ଦୋଷୀକୁ ଉପଯୁକ୍ତ ଦଣ୍ଡ ଦିଆଯାଇଥାଏ । ନିଜର କୃତକର୍ମ ଓ ଅପକର୍ମ ଯୋଗୁଁ ବ୍ୟକ୍ତି ବିଶେଷକୁ ଅପମାନିତ ଓ ଲାଞ୍ଛିତ ହେବାକୁ ପଡିଥାଏ ଏବଂ ପରିଶେଷରେ ଶାରୀରିକ ଓ ଆର୍ଥିକ ଦଣ୍ଡରେ ଦଣ୍ଡିତ ହୋଇ ଏକ ସୁସ୍ଥ ନାଗରିକ ହୋଇଥାଏ । ତେଣୁ ଆଦିବାସୀ କୋଠଘର ଗୁଡିକ ସେମାନଙ୍କ ଲୋକସାହିତ୍ୟରେ ଅଭିମନ୍ତ୍ରିତ ଗୋଟିଏ ଗୋଟିଏ ଶିକ୍ଷା ନିକେତନ କହିଲେ ଅତ୍ୟୁକ୍ତି ହେବନାହିଁ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ଅନୁମେୟ ଯେ, ଆଦିବାସୀମାନଙ୍କୁ ସାକ୍ଷରତା ପ୍ରଦାନ ଦିଗରେ 'ଆଦିବାସୀ ଲୋକସାହିତ୍ୟ'ର ଏକାନ୍ତ ଆବଶ୍ୟକତା ରହିଅଛି । ଏହା ବ୍ୟତିରେକ ସାକ୍ଷରତା ସଂପୂର୍ଣ୍ଣ ଅସମ୍ଭବ ଅଟେ । ତେଣୁ ଏହାକୁ ଧ୍ୟେୟକରି ଆଦିବାସୀମାନଙ୍କୁ ସାକ୍ଷର କରାଯାଇ ପାରିବ ।

କିନ୍ତୁ ଦୁଃଖ ଏବଂ ପରିତାପର ବିଷୟ, ମହାନ ସଂସ୍କୃତି ଓ ପବିତ୍ର ପରମ୍ପରା ଜଡିତ ଆଦିବାସୀ ଲୋକସାହିତ୍ୟ କ୍ରମଶଃ ଅବକ୍ଷୟମାଣ । ଧୀରେଧୀରେ ଏହା ଲୁପ୍ତ ହେବାକୁ ବସିଲାଣି । ଅଣ-ଆଦିବାସୀ ମାନଙ୍କର ସଂସ୍ପର୍ଶରେ ଆସି ଅଧୁନାତମ ଆଦିବାସୀ ଯୁବକ ଓ ଯୁବତୀମାନେ ଏଥିପ୍ରତି ପୂର୍ବପୁରୁଷ ମାନଙ୍କ ପରି ଆକୃଷ୍ଟ ହେଉନାହାନ୍ତି । ଏହାର ପବିତ୍ରତା ଓ ମହାନତା ପ୍ରତି ବିତୃଷ୍ଣ ହୋଇ ପଡୁଛନ୍ତି । ଯେଉଁ ବୟସ୍କ ବା ବୃଦ୍ଧ ବ୍ୟକ୍ତିମାନେ ଅପ୍ରାପ୍ତବୟସ୍କ ବାଳକ ବାଳିକାମାନଙ୍କୁ ଏଥିରେ ଅନୁରଣିତ ହୋଇ ଜୀବନକୁ ସୁଖମୟ କରିବାକୁ ନିର୍ଦ୍ଦେଶ ଓ ଚେତାବନୀ ଦେଇ ଆସୁଥିଲେ, ପରିସ୍ଥିତିର ଚାପାରେ ବି ସେମାନେ ନୀରବ ରହିବାକୁ ଆରମ୍ଭ କଲେଣି ।

ଆଦିବାସୀ ଲୋକସାହିତ୍ୟ ଲୋପ ପାଇଲେ ସେମାନଙ୍କ ମଧ୍ୟରେ ସାକ୍ଷରତାର ବୀଜବପନ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର ହୋଇପଡିବ । କାରଣ ସାକ୍ଷରତା ର ପ୍ରସାର ଲୋକସାହିତ୍ୟ ମାଧ୍ୟମରେ ହିଁ ସହଜ ଓ ସୁଗମ ରୂପେ ହୋଇଥାଏ । ତେଣୁ ଆଦିବାସୀ ମାନଙ୍କୁ ସାକ୍ଷରତା ମନ୍ତ୍ରରେ ଅଭିମନ୍ତ୍ରିତ କରିବାକୁ ହେଲେ 'ଆଦିବାସୀ ଲୋକସାହିତ୍ୟ' ଉପରେ ଯଥେଷ୍ଟ ଗବେଷଣା ଦରକାର । ପ୍ରତ୍ୟେକ ଆଦିବାସୀଗୋଷ୍ଠୀର ଲୋକସାହିତ୍ୟ ଗୁଡିକୁ ସଂଗ୍ରହ ଓ ସଂରକ୍ଷଣ କରିବା

ଆବଶ୍ୟକ । ଅଭିଜ୍ଞ ଗବେଷକମାନଙ୍କ କର୍ତ୍ତୃକ ଏହାକୁ ସରଳ ଓ ସୁନ୍ଦର ଭାବରେ, ଓଡିଆ ଅକ୍ଷରରେ ଓ ଆଦିବାସୀଭାଷାରେ ଲେଖି ପୁସ୍ତକ ପ୍ରକାଶ କରିବା ଦରକାର ।

ଆଦିବାସୀ ଅଞ୍ଚଳରେ ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷକଙ୍କ ଦ୍ୱାରା ଏହାକୁ ଶିକ୍ଷା ଦେବା ଆବଶ୍ୟକ । ଫଳତଃ ଏହା ଆଦିବାସୀମାନଙ୍କର ବୋଧଗମ୍ୟ ହୋଇ ପାରିବ । ସେମାନେ ଏଥିପ୍ରତି ଆକୃଷ୍ଟ ହେବେ ଓ ସରକାରଙ୍କ 'ସାକ୍ଷରତା' ଯୋଜନା ଫଳପ୍ରଦ ହୋଇ ପାରିବ ।

# ଆମେ, ଆମ ଲୋକଗୀତ ଓ ଜନଶିକ୍ଷା

ଆପଣାକୁ ଆପେ ଚିହ୍ନିବାରେ, ଆପଣା କାନ୍ଧରେ ଆପଣା ମଣିଷକୁ ଟେକିବାରେ ଆମେ ଓଡିଆଏ ଟିକେ ନିପାରୁ । ଆମ ପାଖରେ ଗଚ୍ଛିତ ଥିବା ନିଧି ଆମକୁ ଅଜଣା । ଭଲ-ମନ୍ଦ ସବୁକୁ ଜଗନ୍ନାଥଙ୍କୁ ସମର୍ପି, ସବୁ ଘଟଣା ଦୁର୍ଘଟଣାକୁ ଆଦରି ଆମେ ଜୀବନ ଜୀଇଁଥାଉଁ । ସବୁ ଅଘଟଣକୁ ଦୁର୍ଯୋଗ ବୋଲି ଧରିନେଇ ଆମେ ସନ୍ତୁଷ୍ଟ । ଜଗନ୍ନାଥଙ୍କ ସଙ୍ଗେ ଛନ୍ଦା ଆମ ଗଭୀର ବିଶ୍ୱାସ ବୋଧ ସଙ୍ଗେ ଉଦ୍‌ଯୋଗର ପ୍ରବୃତ୍ତି ଯେ ତ୍ୟାଜ୍ୟ ନୁହେଁ, ଏହା ଅନେକ ସମୟରେ ଆମ ବିଚାର ବହିର୍ଭୂତ । ଏହି ହେତୁରୁ ଅଶିକ୍ଷା ଓ କୁଶିକ୍ଷାର ଆବର୍ତ୍ତରେ ଆମର ଅର୍ଦ୍ଧାଧିକ ଲୋକ ହନ୍ତସନ୍ତ । ଦୋଷ-ଭାଗ୍ୟର ଅବା ଜଗନ୍ନାଥଙ୍କ ଅପାର କରୁଣାରୁ କଣାଏ ଅପ୍ରାପ୍ତିର ।

ଏକ ଅମୂଲମୂଲ ସଂସ୍କୃତିର ହକ୍‌ଦାର ହୋଇ ବି ଅର୍ଥନୈତିକ-ସାମାଜିକ ଦୃଷ୍ଟିକୋଣରୁ ଆମେ ଜାତୀୟ ମହାସ୍ରୋତରେ ନିମ୍ନମାନ ପରିବେଶଯୁକ୍ତ । ଏ ଦୁର୍ଗତିର ପ୍ରମୁଖ କାରଣ ଯେ ଶିକ୍ଷାର ଅଭାବ-ଏହା ନିଃସନ୍ଦେହ । ବିଭିନ୍ନ ଜାତୀୟ କାର୍ଯ୍ୟକମ

ମାଧ୍ୟମରେ ବେଶ୍ କିଛି ଲୋକ ଆବଶ୍ୟକତା ହେତୁ ଆପଣା ସ୍ୱାକ୍ଷର କରି ଶିଖିଲେ ସିନା ସାକ୍ଷରତା ଗୌରବ ମଣ୍ଡନ କରିପାରିଲେ ନାହିଁ । ବରଂ ପିଢିରୁ ପିଢିକୁ ଗଡିଆସୁଥିବା ଶ୍ରୁତିରେ ଶ୍ରୁତିରେ ସଞ୍ଚିତ ସାହିତ୍ୟ-ଧନରୁ ଅନେକାଂଶ ଭାସି ହଜିଗଲା । ଆମର ପୂର୍ବ ପୁରୁଷେ ସଭିଏଁ ଲେଖି ପଢି ଜାଣି ନଥିଲେ ସିନା, ଜ୍ଞାନରେ ଉଣାଥିବାର ବିଶେଷକରି ଜୀବନ ସମ୍ପର୍କୀୟ ଭଗବତ୍ ଜ୍ଞାନରେ ଉଣା ଥିବାର ତ ଜଣା ପଡେନି । ସାଧାରଣ ଟାହି ଟାପରରାରେ ବ୍ୟବହୃତ ବୋଲି ବାଣୀ, ମୁହେଁ ମୁହେଁ ଭାଗବତ, ଜଣାଣ, ଚଉତିଶା, ଚଉପଦୀ, ଗୋପୀଭାଷା, ଲୀଳାବତୀ ସୂତ୍ର, ମାନସାଙ୍କ-ଏସବୁ ସାଧାରଣ ମଣିଷମାନଙ୍କର ସାହିତ୍ୟ ଶ୍ରଦ୍ଧାର ପରିଚୟ ଦିଏ । ଏ ସବୁକୁ ଆହୁରି ମାର୍ଜିତ କରେ ଉତ୍କଳୀୟ ପାଲା, ଦାସକାଠିଆ କବି । ଏପରିକି ଅରଣ୍ୟ ବୁକୁରେ ଆଦିବାସୀ ଯୁବକ ଯୁବତୀ ମାନଙ୍କର ଗୀତ ନୃତ୍ୟରେ ଭାବର ଗଭୀରତା ଭିତରେ ପ୍ରଖର ବୁଦ୍ଧିମତାର ପରିଚୟ ମିଳେ । ଝଲକ ଟିଏ —

''ଗାଇକେ ଗଉଡ ଛେଲିକେ ଛେଲିଆ

କୋବନେ ନେଉ ଚରାସି, ବାବୁଧନ!

ଗୁଟେ ଛେଲି ମେଣ୍ଢା ହଜିବସିଲେ

କୋରାପୁଟେ ଦେବେ ଫାଶୀ

ଆମେ ମରିଗଲେ ମଶାନେ ଦେଖା

ଜଲେ ବୁଡି ପାନି ଟେକା

ଆମେ ମରିଗଲେ ଛାର ପାଉଁଶ

ସକାଲେ କାହବେ ଭାତ ମାଉଁସ ।''

ସାଧାରଣ ମଣିଷ ମାନଙ୍କ ପାଇଁ ମନେ ରଖିବାର ମୂଳ ସୂତ୍ର 'ଛନ୍ଦ' । ଖାଲି ଅକ୍ଷର ଶିଖାଣ ବ୍ୟବହାର ବିନା ମୂଲ୍ୟହୀନ । ତେଣୁ ନିରକ୍ଷର ଓ ନବ ସାକ୍ଷର ମାନଙ୍କ ପାଇଁ ଅକ୍ଷର ଶିକ୍ଷା ସହ ସେସବୁକୁ ମନେରଖିବାର ସୂତ୍ର ଓ ବ୍ୟବହାରିକ ଧାରା ଧରେଇ ଦେବାର ଆବଶ୍ୟକତା ଅସ୍ୱୀକାର କରାଯାଇ ନ ପାରେ । ନର୍ସରୀରେ ପଢୁଥିବା ପିଲାଟିଏ ୪ବର୍ଷ ନହେଉଣୁ ଲେଖି ଶିଖିବା ଆଗରୁ ଗାଉଛି-

| | | | |
|---|---|---|---|
| A BCD | EFG | HIJK | LMNOP |
| LMNOPQ | RST | UVW | XYZ |

ଆମ ଚଳଣିରେ ଆହୁରି ପୂର୍ବରୁ ପିଲା ମୁଣ୍ଡରେ ଅକ୍ଷରମାଳାର ଛାପ ଦେବାର ଦୃଷ୍ଟାନ୍ତ ମିଳେ । ଆମ ପୁରୁଖା ବାପୁଡାଏ ନାତିନାତୁଣୀଙ୍କୁ କୋଳରେ/ଦୋଳିରେ ଶୁଏଇ ଦେବାକୁ ଯାଇ ଗାଉଥିଲେ....

''କଳାକଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ
କରନ୍ତି ମଥୁରା ବିଜୟେ ଦାଣ୍ଡେ ଦେଖ ସଂଗାତ ।
ଖସି ପଡୁଛି କି ଆକାଶୁଁ କିଏ ଗଙ୍ଗା ଯମୁନା
କ୍ଷୀର ସଙ୍ଗେ ପ୍ରାଣ ଶୋଷିଲେ ନାଶ ଗଲା ପୂତନା ।
ଗହନ କାନନ ବନରେ ଘୋର ବରଷା କାଳ
ଗିରିବାମ କରେ ଧଇଲେ ନନ୍ଦ ଯଶୋଦା ବାଳ ।''

ଅନ୍ୟକେଉଁଠି ସଂଜ ହେଲେ ଗ୍ରାମର ଶାନ୍ତ ବାତାବରଣରେ ଖଞ୍ଜଣି ମାଡସହ ପବନରେ ଭାସିଆସୁଥିଲା-

''କହଇ ମନ ଆରେ ମୋ ବୋଲ କର
କଳା ଶ୍ରୀମୁଖ ବାରେ ଦେଖିବାଚାଲରେ ।
ଖଣ୍ଡି ଯେ ଖଣ୍ଡିତୋର ପଞ୍ଜରା କାଠି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟିରେ ।''

କଅଁଳ ବୟସରେ ଏସବୁ ଗୀତ ଶୁଣିବା ଭିତରେ ମନେ ରହିଯାଉଥିଲା । ତା ମନଭିତରେ ଗୁନ୍ଥି ହେଇାଯାଉଥିଲା ଅକ୍ଷର ମାଳା । ଭାବମୟ ଗୀତ ମନ ଭିତରେ ଅପାସୋରା ହୋଇ ରହିଯାଉଥିଲା । ଏ ଗୀତ ଛନ୍ଦ, ଭାବ ଆମ ମାଟି ପାଣି ପବନ ସମ୍ଭୂତ । ଏବେବି ଏହାର ଆଦର ପରିଲକ୍ଷିତ । ଏ ସବୁର ପୁନଃ ପ୍ରୟୋଗ ଆମର ଜନଶିକ୍ଷା ପ୍ରସାରରେ ନିଶ୍ଚୟ ସହାୟକ ହେବ । ସେଇ କ୍ରମରେ ଆଉ ଏକ ଗୀତ-

''କମଳ ଲୋଚନ ଶ୍ରୀହରି । କରେଣ ଶଙ୍ଖ ଚକ୍ରଧାରୀ ।।
ଖଗ ଆସନେ ଖଗପତି । ଖଟନ୍ତି ଲକ୍ଷ୍ମୀ ସରସ୍ୱତୀ ।।''

ଆମର ଲୋକ ଗୀତ କିଛି ଅସଂସ୍କୃତ ଲୋକଙ୍କର ଖିଆଲରୁ ନୁହେଁ ବରଂ ଅନ୍ତର୍ନିହିତ ଆବେଗରୁ ସୃଷ୍ଟ । ଏହା ସାଥିରେ ଆମର ଗୌରବମୟ ଐତିହ୍ୟ ଓ ପରମ୍ପରା ଜଡିତ । ନିଜର ଲୋକଗୀତ ତଥା ଲୋକ ସାହିତ୍ୟର ଅନାଦରରେ କ୍ଷତି ହିଁ ଆମର । ଗଣ ମାନସରେ ଏକ ଶାଶ୍ୱତ ସଚେତନତା ସୃଷ୍ଟି ତଥା ମଣିଷର ସାମାଜିକ ଜୀବନକୁ ଶୃଙ୍ଖଳିତ କରିବା ପାଇଁ ଆମକୁ ଆମର କର୍ଣ୍ଣମାଧ୍ୟମରେ ରକ୍ତକୁ ସଂଚାରି ଦେବାକୁ ହେବ ମଣିଷ ଗଢିବାର ସୂତ୍ର, ନିଷ୍ପେଷିତ ହେବାର ଜିଅନ୍ତା-ମରଣ ଯନ୍ତା ଭିତରୁ ମୁକୁଳିବାର ମହାମନ୍ତ୍ର, ପାରସ୍ପରିକ ବୁଝାମଣା ନେଇ ପ୍ରକୃତି ସାଥିରେ ବଂଚିବାର ବାର୍ତ୍ତା । ଅକ୍ଷର ଶିକ୍ଷା ସଙ୍ଗେ ସଙ୍ଗେ ଆମକୁ କବଳିତ କରୁଥିବା ଅବସନ୍ନତା ଓ ସାମାଜିକ

ବ୍ୟାଧିରୁ ମୁକ୍ତି ପାଇବାକୁ ହେବ । ଆମ ସଂସ୍କୃତିର ସୁରକ୍ଷା କରିବାକୁ ହେବ । ଲୋକଗୀତ ଏହି ପ୍ରକାର ମାଧମ ଯାହାଦ୍ୱାରା ସାକ୍ଷରତା ଓ ସଚେତନତାର ବୀଜ ବିକ୍ଷେପ ହୋଇପାରିବ ।

ଅନ୍ୟର ସଂସ୍କୃତି/ପରମ୍ପରା ଜାଣିବା, ସେ ସମ୍ପର୍କରେ ଜ୍ଞାନ ଆହରଣ କରିବାରେ ଦୋଷ ନାହିଁ । କିନ୍ତୁ ଅନ୍ୟ ଦିଗକୁ ଆପଣେଇବା ଭିତରେ ଆପଣାାକୁ ଭୁଲିଯିବାରେ ଦୋଷ । ଆମର ଏ ପ୍ରକାର ଅନୁଭବ କବିତାରେ ପ୍ରକାଶ ଏମନ୍ତେ-

''ବିରୁଡି ବସାରୁ ମହୁ ଖୋଜୁଅଛି ମନୁଆ
ନିଆଁ କୁହୁଳିଲେ ବିରୁଡ଼ି ସଂସାର ଛାନିଆଁ
ଟାପରା ନବୁଝେ ବିରୁଡି ବାପୁଡା ବଣୁଆ
ବୁଝି ନ ବିଚାରି ଉଗୁରେଇ ହେଲେ ଅଡୁଆ ।''

'ଅନନ୍ତଂ ଅବୟଂ କବି ।' କବି ତା'ର ଆବେଗରେ ସାଂପ୍ରତିକ ସମାଜର କ୍ଳେଶବୀଜକୁ ପ୍ରକାଶ କରୁ । ସାମାଜିକ ଆବଶ୍ୟକତାକୁ ନେଇ ଛାତିରୁ ଉଛୁଳା ଶବ୍ଦମାଳା ଅବାଟରେ ବାଟ ଦେଖାଉ । ଛନ୍ଦମୟ ହେଉ ସୃଷ୍ଟି, ଜୀବନ ।

# ଢଗ ଢମାଳି

ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପରେ ମଧ୍ୟ ଆମ ଦେଶରେ ବହୁ ସଂଖ୍ୟକ ନରନାରୀ ନିରକ୍ଷର ରହିଛନ୍ତି । ସରକାରଙ୍କ ପକ୍ଷରୁ ଏବେ ଦେଶବାସୀଙ୍କ ପାଇଁ ଯେଉଁ ସବୁ ସର୍ବନିମ୍ନ ମୌଳିକ ସୁବିଧା ସୁଯୋଗ ଓ ସାମାଜିକ ନ୍ୟାୟର ବ୍ୟବସ୍ଥା କରାଯାଉଛି ସେଥିରୁ ଏହି ନିରକ୍ଷର ନରନାରୀମାନେ ବଞ୍ଚିତ ହେଉଛନ୍ତି । ଏହାର ମୁଖ୍ୟ କାରଣ ସେମାନେ ଅଜ୍ଞାନ ଓ ଅନ୍ଧକାର ମଧ୍ୟରେ ପଡିଛନ୍ତି । ପଢି ଲେଖି ଜାଣି ନଥିବାରୁ ଅନେକ ଭାଇ ଓ ଭଉଣୀ ନିଜ ଅଧିକାର ସମ୍ପର୍କରେ ସଚେତନ ହୋଇ ପାରୁନାହାନ୍ତି ।

ଏବେ ଯେଉଁ ସାକ୍ଷରତା ଅଭିଯାନ ଚାଲିଛି ତାହା ଏହି ଭାଇ ଭଉଣୀମାନଙ୍କ ପାଇଁ ବରଦାନ ସ୍ୱରୂପ । ନିରକ୍ଷର ତଥା ପରିଣତ ବୟସରେ ଉପନୀତ ବ୍ୟକ୍ତିମାନଙ୍କ ଚତୁଃପାର୍ଶ୍ୱରେ ବର୍ତ୍ତମାନ ଯେଉଁ ସାମାଜିକ, ବୈଜ୍ଞାନିକ, ରାଜନୀତିକ ଓ ଆର୍ଥିକ ପରିବର୍ତ୍ତନ ଘଟିଯାଉଛି ସେ ସବୁ ସମ୍ପର୍କରେ ସମୁଚିତ ଜ୍ଞାନ ଆହରଣ ପାଇଁ ସେମାନେ ବ୍ୟାକୁଳ । ମାତ୍ର ନିଜ ପୁଅ-ଝିଅ ଓ ନାତିନାତୁଣୀଙ୍କ ପାଖରେ ସିଲଟ ଖଡି ବହି ଖାତା

ଧରି ବସି ପାଠ ପଢିବାକୁ ସେମାନେ ସଂକୋଚ ମନେ କରୁଛନ୍ତି । 'ଛତୁ ଉଠା କାଠ, ନିଶ ଉଠା ପାଠ' ପୁରୁଣା ଉକ୍ତିଟି ଦୋହରାଇ ସେମାନେ ହସିଦେଇ ଚାଲିଯାଉଛନ୍ତି । ପାଠ ପଢ଼ିବାକୁ ସେମାନଙ୍କ ମନ ଡାକୁଛି । ଦୁନିଆ ବିଷୟରେ ସବୁନୂଆକଥା ଜାଣିବାକୁ ଇଛା ହେଉଛି । ଏଣେ ସରକାର ଏହି ନିରକ୍ଷରମାନଙ୍କୁ ସାକ୍ଷର କରିବା ପାଇଁ ଅଜସ୍ର ଧନ ବ୍ୟୟ କରିବା ସଙ୍ଗେ ସଙ୍ଗେ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେଉଛନ୍ତି । ଅଥଚ କାର୍ଯ୍ୟକ୍ରମ ଆଶାନୁରୂପ ଅଗ୍ରସର ହୋଇ ପାରୁନାହିଁ ।

ଖାଲି ଅକ୍ଷର ପରିଚୟ କରାଇ ଲେଖା ପଢା ଶିଖାଇ ଦେଲେ ଯଥେଷ୍ଟ ହେଲା ନାହିଁ । ଯେତିକି ଶିଖିଛନ୍ତି ତାକୁ ଭୁଲି ନ ଯାଇ ପୁଣି ଆଗକୁ ଚାଲିବା ଓ ବେଶୀ ବେଶୀ ପଢି ଅଧିକ ଜ୍ଞାନ ଆହରଣ କରିବା ଦିଗରେ ଏହି ନବସାକ୍ଷରମାନଙ୍କୁ ଦିଗ୍‌ଦର୍ଶନ ଦେଇ ସାହାଯ୍ୟ କରିବା ଏକ ଜଟିଳ ସମସ୍ୟା । ସେମାନଙ୍କ ବୋଧଗମ୍ୟ ହେଲାଭଳି ନୂଆ ନୂଆ ବହି ଲେଖିବା ମଧ୍ୟ ଆଉ ଏକ ସମସ୍ୟା ।

ଏବେ ମଧ୍ୟ ଆମ ସମାଜରେ ବିଶେଷତଃ ଗ୍ରାମାଞ୍ଚଳରେ କରୁଥିବା ନରନାରୀଙ୍କ ମଧ୍ୟରେ ବହୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ବସା ବାନ୍ଧି ରହିଛି । ଏ ସବୁ ଯେ ପ୍ରଗତିର ପରିପନ୍ଥୀ ତାହା ସେମାନଙ୍କୁ ବୁଝାଇବା କଷ୍ଟକର । ଏହି ନବସାକ୍ଷରଙ୍କ ହୃଦବୋଧ ହେଲା ଭଳି ଯୁକ୍ତି ଉପସ୍ଥାପନ କରି ପୁସ୍ତକ ଲେଖା ହେବା ଆବଶ୍ୟକ । ଗ୍ରାମାଞ୍ଚଳରେ ପ୍ରଚଳିତ ଲୋକସାହିତ୍ୟ, ପହଲି, ଲୋକଗୀତ, ପ୍ରବାଦ, ପ୍ରବଚନ, ଢ଼ଗ ଢ଼ମାଳି ଗୁଡିକ ଆବଶ୍ୟକ ସ୍ଥଳେ ସଂଶୋଧିତ ଓ ପରିମାର୍ଜିତ କରାଯାଇପାରେ । ପୁରାଣ ଓ କାବ୍ୟ ତ ସହଜରେ ବଦଳାଇ ହେବନାହିଁ, ଏହା ଲୋକଙ୍କ ମନରେ ଚେର ବାନ୍ଧିଛି । ମାତ୍ର ଲୋକ ସାହିତ୍ୟରେ ନୂତନ ପ୍ରଲେପ ଦେଇ ସେଥିରୁ ଅନାବଶ୍ୟକ

ବିଷୟ ବସ୍ତୁ ଓ ଚିନ୍ତାକୁ ବାଦ ଦେଇ ନୂତନ ଶୈଳୀ ଓ ନୂତନ ଢଙ୍ଗରେ ପୁନଃପରିବେଷଣ କରାଯାଇପାରିବ । ଏହି ଲୋକସାହିତ୍ୟରୁ କେତୋଟି ଉଦାହରଣ ଏଠାରେ ଦିଆଯାଇପାରେ ।

କଥାରେ କହନ୍ତି —

''ହରଗୁଣ ଫେଡ୍ ମିଶା
ଆଉ ସବୁ ପାଠ ଫସର ଫସା ।''

ସାମାନ୍ୟ ଅଙ୍କ ପଢିଦେଲେ ଘର କି ଦୋକାନ ଖର୍ଚ୍ଚ ପତ୍ର, ଆୟ ବ୍ୟୟ ହିସାବ ରଖିହେବ । ଆଉ କୌଣସି ପାଠର ଆବଶ୍ୟକତା ନାହିଁ । ଏପରି ଭୁଲ ଧାରଣା ବଦଳାଇବାକୁ ପଡିବ । ଢ଼ଗଢ଼ମାଳିକୁ ଆବଶ୍ୟକ ସ୍ଥଳେ ପରିବର୍ତ୍ତିତ ମାର୍ଜିତ କରିବାକୁ ହେବ ।

ଗାଁ ଗହଳରେ ଗୋଟିଏ ଉକ୍ତିଅଛି- ''ଶାଶୁ ମଲା, ବୋହୂ ବେଇଲା, ଯେଉଁ ତିନି ପ୍ରାଣୀ କି ସେଇ ତିନି ରହିଲା ।'' ଏ ଉକ୍ତିକି ଯଦି କେହି ଦୋହରାନ୍ତି ତାଙ୍କୁ ପ୍ରଶ୍ନ କରନ୍ତୁ, ''ତା ହେଲେ ଜନସଂଖ୍ୟା ବିସ୍ଫୋରଣ ଘଟୁଛି କାହିଁକି ? ପରିବାର ଙ୍କ ଗ୍ରାମରେ ପାଞ୍ଚବର୍ଷ ତଳେ ଯେତେ ଲୋକ ଥିଲେ ଆଜି କ'ଣ ସେତିକି ଅଛନ୍ତି ?''

ସେହିପରି ଅନ୍ୟ ଏକ ଉକ୍ତି-

''ହାଉଲେ ହାଉଲେ ଚାଲିକି
ସରି ନୁହେଁ ଘୋଡା ପାଲିଙ୍କି ।''

ସେହି ପରି ଅନ୍ୟ ଗୋଟିଏ ଆପ୍ତ ବାକ୍ୟ ଅଛି-'ଧୀର ପାଣି ପଥର କାଟେ ।' ବର୍ତ୍ତମାନର ସମାଜ କ୍ଷିପ୍ର ଗତିରେ ଧାବମାନ ହେଉଛି । ଠେଲି ପେଲି ସମସ୍ତେ ଆଗଉଛନ୍ତି । କମ୍ ସମୟରେ ଅଧିକ କାମର ଏହି ଯୁଗ । ଦୌଡ, ଭାରୋତ୍ତୋଳନ ଓ ଡିଆଁ ଡେଇଁରେ ଅଲିମ୍ପିକର ମଟୋ ''ଆହୁରି ବେଗରେ, ଆହୁରି ଜୋର୍, ଉଚ୍ଚରୁ ଆହୁରି ଉଚ୍ଚ'- ନୂଆ ନୂଆ ରେକର୍ଡ ସୃଷ୍ଟି ପାଇଁ ସମସ୍ତେ ଚେଷ୍ଟିତ । ତେଣୁ ହାଉଲେ ହାଉଲେ ଚାଲ, ବେଗ କମାଇ ଦିଅ ଏପରି ଧାରଣ ନବସାକ୍ଷରଙ୍କୁ ଦେବା ଅନୁଚିତ ।

ଆମ ପିଲାମାନଙ୍କୁ କିପରି ଏକ କୁଶିକ୍ଷା ଦିଆଯାଉଛି ତାହା ମଧ୍ୟ ଲକ୍ଷ୍ୟ କରିବା କଥା । ଛୋଟ ପିଲାଙ୍କୁ ଖେଳାଇଲା ବେଳେ ତାଙ୍କ ଆଙ୍ଗୁଠି ଗଣି କୁହାଯାଏ, ''ଏଇଟି କହିଲା କିସ କରିବା, ଏଇଟି କହିଲା କାହୁଁ ପାଇବା ? ଏଇଟି କହିଲା କାହୁଁ ସୁଝିବା । ଶେଷରେ ବୁଢାମିଅାଁ (ବୁଢା ଆଙ୍ଗୁଠି) ଥାଇ ଥାଇ କହିଲା ସୁଝିବା କଣ?ଖାଇ, ପିଇ ଚାଲିଯିବା ।''

କେତେ ମାରାତ୍ମକ କଥା ଇଏ ! ବର୍ତ୍ତମାନ ସାରା ଦୁନିଆ ଋଣରେ ଚାଲିଛି । ଋଣମୟ ସଂସାର । ଏପରିକି ସରକାର ମଧ୍ୟ ଋଣ କରୁଛନ୍ତି । ଗୋଟିଏ ଦେଶର ସରକାର ଅନ୍ୟ ଦେଶଠାରୁ ଋଣ କରି ଚଳନ୍ତି । ବ୍ୟାଙ୍କମାନେ ଋଣ ଦେଉଛନ୍ତି । ଋଣ ଯଦି ନ ଶୁଝି ସମସ୍ତେ ଖାଇପିଇ ଚାଲିଯିବେ, ତେବେ ସଂସାର ଚାଲିବ କେମିତି ? ବ୍ୟାଙ୍କ ଋଣ ନ ଶୁଝିଲେ ଅନ୍ୟମାନେ ଋଣ ପାଇବେ କିପରି ? ତେଣୁ ବୁଢାମିଅାଁ ତୁଣ୍ଡରେ ଖାଇ ପିଇ ଚାଲିଯିବା କଥା ନ କହି ଋଣ ଶୁଝିବା ଲାଗିତ ପରାମର୍ଶ ଦିଆଯିବା ଉଚିତ ହେବ ।

ସମାଜରେ ପ୍ରଚଳିତ ଲୋକ ସାହିତ୍ୟ ଲୋକଗୀତି ଓ ଢ଼ଗଢ଼ମାଳି ଗୁଡିକର ବ୍ୟାପକ ସଂଶୋଧନ ଆବଶ୍ୟକ ।

ଲୋକ ସାହିତ୍ୟରେ ଗୋଟିଏ ଉକ୍ତି ପ୍ରଚଳିତ ଅଛି । ଯିଏ ପାଠରେ ତ୍ରୁଟି କଲା ତାକୁ କହନ୍ତି- 'କୁଣ୍ଡା ଦେଇ ପାଠ ପଢିଛି ।' ଆଗେ ଗୁରୁଙ୍କୁ ଦକ୍ଷିଣା ଓ ଉପଢୌକନ ଆଦି ଦିଆଯାଉଥିଲା । ଦକ୍ଷିଣା ନ ଦେଲେ ବିଦ୍ୟା କାମ କରୁ ନଥିଲା । ସେଇ ଦିନୁ ଏପରି ଉକ୍ତି ପ୍ରଚଳିତ । ମାତ୍ର ଏବେ ତ କାଳ ଓଲଟି ଯାଇଛି । ସରକାର ଛାତ୍ରମାନଙ୍କୁ ବହିପତ୍ର ଯୋଗାଇ ଦେଇ ମାଗଣାରେ ପାଠ ପଢିବାକୁ ଡାକୁଛନ୍ତି । ଶିଷ୍ୟଙ୍କର ଆଉ ଗୁରୁଙ୍କୁ ଦକ୍ଷିଣା ଦେବା ବେଳ ଗଲାଣି । ତେଣୁ 'କୁଣ୍ଡା ଦେଇ ପାଠ ପଢିବା' ଉକ୍ତିର ସାରକଥା ଆଉ କଣ ? ସାକ୍ଷରତା ଅଭିଯାନ ଭଳି ଏକ ଜନକଲ୍ୟାଣକର କାର୍ଯ୍ୟରେ ସରକାର କାହିଁକି ମାତିଛନ୍ତି ସେ ସମ୍ପର୍କରେ ନିରକ୍ଷର ଭାଇଭଉଣୀଙ୍କୁ ଅଧିକ ବୁଝାଇବା ସମ୍ଭବତଃ ଆବଶ୍ୟକ ହେଉଛି ।

# ଲୋକ ସାହିତ୍ୟର ଉପଯୋଗ

ଲୋକ ସାହିତ୍ୟ ଲୋକମାନଙ୍କର ସାହିତ୍ୟ । ମୁହଁର ଜୀବନ୍ତ ଚଳନ୍ତି ଭାଷାରେ ରଚନା କରାଯାଇଥିବା ଲୋକ ସାହିତ୍ୟରେ ସମୟ, ସ୍ଥିତି ଓ ସମାଜକୁ ଚାହିଁ ଏପରି ଅନେକ କଥା ରହିଛି, ଯେଉଁଥିରେ ଜୀବନ ଦର୍ଶନ ସହିତ ଚଳଣିକୁ ଶୁଦ୍ଧ ସରସ କରିବା ପାଇଁ ପ୍ରଚୁର ଉପାଦାନ ମିଳେ । ଲୋକସାହିତ୍ୟରେ ନୀତି ଓ ନୈତିକତା ପ୍ରାଧାନ୍ୟ ପାଇଛି ସତ, କିନ୍ତୁ ଏଥିରେ ବାସ୍ତବବାଦୀ ଦୃଷ୍ଟିକୋଣ ସହିତ ଲୋକ ଚରିତ୍ରକୁ ସତତାର ସହିତ ପର୍ଯ୍ୟବେକ୍ଷଣ କରାଯାଇଛି । ଲୋକ ଚରିତ୍ର ଓ ଚଳଣି ସହିତ ଏହା ଏତେ ଓତପ୍ରୋତ ଭାବେ ଜଡ଼ିତ ଯେ, ଗୋଟିକ ଭିତରେ ଅନ୍ୟର ପ୍ରତିବିମ୍ବ ଦେଖିବାକୁ ମିଳେ । ଲୋକ ସାହିତ୍ୟ ନିରୋଳ କଳ୍ପନା ବା ବ୍ୟଞ୍ଜନା ନୁହେଁ, ବାସ୍ତବତା ସହିତ ଏହାର ସମ୍ବନ୍ଧ ନିବିଡ଼ ।

ସମାଜ ଓ ସମୟ ସହିତ ତାଳ ଦେଇ ଲୋକ ସାହିତ୍ୟର କେତେକାଂଶ ଗତି କରିନାହିଁ; କିନ୍ତୁ ପ୍ରାୟ ସବୁ ଅବସ୍ଥାକୁ ଚାହିଁ କିଛିନା କିଛି ମାର୍ଗଦର୍ଶନ କରିବାର ଉପଚାର

ଏଥିରେ ରହିଛି । ଆଧୁନିକ ମନୁଷ୍ୟର ଚଳଣି ବଦଳିବା ସତ୍ତ୍ୱେ ସେଥିରେ ଦେଶକାଳ ପାତ୍ରର ସୀମାବଦ୍ଧତା ଅତିକ୍ରମ କରି ସବୁକାଳ ପାଇଁ ଉପଯୋଗୀ କେତେକ ଉପାଦେୟ ତତ୍ତ୍ୱ ରହିଛି । ମାନବିକ ସମ୍ବଳ ବିକାଶ ର ସବୁଦିଗ ଏହାଦ୍ୱାରା ପ୍ରଭାବିତ ହେବାର ସମ୍ଭାବନା ରହିଛି । ଏକବିଂଶ ଶତାବ୍ଦୀରେ ମାନବିକ ବିକାଶର ଯେଉଁ ବିଭାଗ ଗୁଡିକ ଅଧିକ ପ୍ରଭାବିତ ବା ପରିବର୍ତ୍ତିତ ହେବାର ସମ୍ଭାବନା ରହିଛି, ସେସବୁ ମଧ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ଯୋଗାଯୋଗ ଓ ପ୍ରଶାସନ ଅନ୍ୟତମ । ପଚାଶ ବର୍ଷଧରି ଭାରତର ଗଣତନ୍ତ୍ର ଶାସନ ନାଗରିକ କୁ ଦେଇଛି ସ୍ୱାଧିକାର ଓ ସମ୍ମାନ । ତେଣୁ ନାଗରିକର ଚରିତ୍ର ଓ ଚଳଣିରେ ମୌଳିକ ପରିବର୍ତ୍ତନ ହେବା ସ୍ୱାଭାବିକ । ଶିକ୍ଷା ଓ ସାହିତ୍ୟ ସଚେତନତା ପ୍ରସାର କରିବାର ମୁଖ୍ୟ ମାଧ୍ୟମ । ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥାରେ ବ୍ୟକ୍ତିର ଭୂମିକା, ଶାସନ ଓ ସଂଗଠନ ପରିଚାଳନାରେ ତାର ଅଧିକାର ଓ କର୍ତ୍ତବ୍ୟ ଏବଂ ବିଜ୍ଞାନ ଓ ଯୋଗାଯୋଗର ଅଭୂତପୂର୍ବ ଅଗ୍ରଗତି ଫଳରେ ସଂକୁଚିତ ହେଉଥିବା ପୃଥିବୀରେ ତାର ସ୍ଥାନ ସମ୍ବନ୍ଧରେ ସେ ସଚେତନ ଓ କ୍ରିୟାଶୀଳ ଭୂମିକା ନବାକୁ ଚାହେଁ । ଏକବିଂଶ ଶତାବ୍ଦୀର ମା 'ଟୀକା ଗୋବିନ୍ଦ ଚନ୍ଦ୍ର' ଶୁଣି ବେଦନାର୍ତ୍ତ ହୋଇପାରେ, କିନ୍ତୁ ଅନିତ୍ୟ ସଂସାର ଓ ଜୀବନର ଅସାରତା ସମ୍ବନ୍ଧରେ ସେ ଆଉ ପୁଅକୁ ପ୍ରବଚନ ଦବ ନାହିଁ । ବରଂ ଧର୍ମ, ଜାତି, ଗୋତ୍ରର ଶୃଙ୍ଖଳା ଓ ସୀମା ଭାଙ୍ଗି ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା କରିବା ସକାଶେ ଧର୍ମ ଅପେକ୍ଷା ମାନବିକତା ଓ ନ୍ୟାୟ ପରାୟଣତାକୁ ଅଧିକ ପ୍ରାଧାନ୍ୟ ଦବ । ବ୍ୟକ୍ତି ତଥା ବ୍ୟଷ୍ଟି ଚେତନାର ଏହି ମୌଳିକ ପରିବର୍ତ୍ତନ କୁ ଅସ୍ୱୀକାର ନକରି ଏକବିଂଶ ଶତାବ୍ଦୀ ପାଇଁ ଯେଉଁ ପ୍ରସ୍ତୁତି ଚାଲିଛି, ସେଥିରେ ପ୍ରତ୍ୟେକ ବ୍ୟକ୍ତିର ସର୍ଜନାତ୍ମକ ଭୂମିକା କୁ ଅଧିକ ପ୍ରୋତ୍ସାହନ ଦବାକୁ ହେବ । ଏହି କାର୍ଯ୍ୟକରିବାରେ ପ୍ରଧାନ ସହାୟକ ହେବ ସାହିତ୍ୟ ।

ସାହିତ୍ୟ ମାଧ୍ୟମରେ ସଚେତନତା ପ୍ରସାରିତହୁଏ ସ୍ଥାନରୁ ସ୍ଥାନକୁ, କାଳରୁ କାଳକୁ ଏବଂ ବ୍ୟକ୍ତିଠାରୁ ବ୍ୟକ୍ତିକୁ । ତେଣୁ କେତେଗୁଡିଏ ପରୀକ୍ଷିତ ସଫଳ ମାଧ୍ୟମ ମଧ୍ୟରୁ ସାହିତ୍ୟ ଓ ଇଲେକ୍‌ଟ୍ରୋନିକ୍ସ ଗଣ ମାଧ୍ୟମ ଅନ୍ୟତମ । ଏକବିଂଶ ଶତାବ୍ଦୀ ରେ ଲୋକ ସାହିତ୍ୟର ସର୍ଜନାତ୍ମକ ଦିଗ ଜୀବନକୁ ସରସ ସୁନ୍ଦର କରିବାରେ ଯେ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ । ଲୋକ ସାହିତ୍ୟ ଅନୁଭୂତି ଓ ଅନୁଶୀଳନ ରୁ ଅତୀତରେ ସୃଷ୍ଟି ହୋଇଥିଲା ଅନେକ ଶ୍ରୁତି ଏବଂ କିଛି ରଚନା ରୂପରେ । କିନ୍ତୁ ଏହା ଅତୀତରେ ରହିନଯାଇ ବର୍ତ୍ତମାନକୁ ରସସିକ୍ତ କରୁଛି ଏବଂ ଭବିଷ୍ୟତକୁ ମଧ୍ୟ କରିବ । ଭବିଷ୍ୟତ ସମାଜ ଗଠନରେ ବ୍ୟକ୍ତିର କିଭଳି ଭୂମିକା ରହିବ ତାହାରି ଉପରେ ଲୋକସାହିତ୍ୟର ଅବଦାନ ନିର୍ଭର କରିବ । ଜନ୍ ଗଲସ୍‌ୱାର୍ଦି ଥରେ କହିଥିଲେ " If you do not think about the future, you cannot have it." ଅର୍ଥାତ୍ ,''ତୁମେ ଯଦି ଭବିଷ୍ୟତ ସମ୍ବନ୍ଧରେ ଭାବିବ ନାହିଁ, ତେବେ ତୁମେ ତାହା ପାଇପାରିବ ନାହିଁ ।'' ଏଇ ଭବିଷ୍ୟତ ଟି କିପରି ହେବ ତାହା ଚିନ୍ତା କରାଯାଉ ।

ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜଗତର ବିଭିନ୍ନ କ୍ଷେତ୍ରରେ ବିପୁଳ ପରିବର୍ତ୍ତନ ଦେଖାଯାଇଛି । ଆଜିର ପୃଥିବୀ ଜଗନ୍ନାଥ ଦାସ 'ଭାଗବତ' ରଚନା କଲା ବେଳର ପୃଥିବୀଠାରୁ ଅନେକ ଭିନ୍ନ । ପୁଣି ଆମ ଜୀବନକାଳ ମଧ୍ୟରେ ଯାହା ସଂଘଟିତ ହୋଇଛି, ତାହା ଶତାବ୍ଦୀ ଶତାବ୍ଦୀ ଧରି ସମ୍ଭବ ହୋଇ ନଥିଲା । ଜ୍ଞାନବିଜ୍ଞାନ, ଯୋଗାଯୋଗ, ଶିକ୍ଷ, କୃଷି ଓ ଆୟୁର୍ବିଜ୍ଞାନରେ କ୍ରାନ୍ତିକାରୀ ପରିବର୍ତ୍ତନ ସାଧିତ ହୋଇଛି । ସୁତରାଂ ସେସବୁର ଫଳପ୍ରସୂ ଦିଗ ସହିତ ଜନସାଧାରଣଙ୍କର ପରିଚୟ ହେବା ଉଚିତ । ଏକବିଂଶ ଶତାବ୍ଦୀର ଜୀବନ ବିଂଶ ଶତାବ୍ଦୀର ଜୀବନ ଠାରୁ ଆହୁରି ଶାଣିତ, ମାର୍ଜିତ, ଗତିଶୀଳ ଓ ବୁଦ୍ଧିଦୀପ୍ତ ହେବ । ଏଇ ସୁଯୋଗ ଓ ଆହ୍ୱାନ କୁ ଏଡି ଦେଇ

ହେବ ନାହିଁ । ଆମ ଲୋକଙ୍କର ଲୋକ ସାହିତ୍ୟ ପ୍ରତି ପାରମ୍ପରିକ ଅନୁରାଗ ରହିଛି । 'ଟୀକା ଗୋବିନ୍ଦ ଚନ୍ଦ୍ର' ବା ବହୁଲୋକଗୀତର ମର୍ମାର୍ଥ ଏଯୁଗରେ ପ୍ରଯୁଜ୍ୟ ହୋଇନପାରେ କିନ୍ତୁ ଲୋକମାନଙ୍କୁ ଭାବବିହ୍ବଳ କରି ରଖିବା ପାଇଁ ସେଇ ସଂଗୀତର ସ୍ୱର ବହୁକାଳ ପର୍ଯ୍ୟନ୍ତ ଉଦ୍‌ବୁଦ୍ଧ କରୁଥିବ । ସେହିପରି 'କଥା ସରିତ ସାଗର'ରେ ଥିବା କାହାଣୀ ବା ଲୋକକଥା ଓ ପ୍ରବଚନରେ ଥିବା ଚିରନ୍ତନତାକୁ ସାର୍ବଜନୀନ କରିବାକୁ ପଡ଼ିବ ।

ସମାଜର ବହୁ ପରିବର୍ତ୍ତନ ହୋଇଛି । ଆହୁରି ହେବ । ମଣିଷ ମାନଙ୍କର ଗତିଶୀଳତା ଆହୁରି ବଢିବ । ବ୍ୟକ୍ତିବାଦୀ ଜୀବନ ଦର୍ଶନ ସ୍ଥାନରେ ସଂଘବାଦୀ ଜୀବନ ଦର୍ଶନ ଅଧିକ ଆଦୃତ ହେବ ଆଗାମୀ ଶତାବ୍ଦୀରେ । ସୁତରାଂ ଦେଶ ଶାସନଠାରୁ ପଞ୍ଚାୟତ ପର୍ଯ୍ୟନ୍ତ ପ୍ରତି ସ୍ତରରେ ନିଜର ସ୍ଥିତି ଦୃଢ଼ କରିବା ସକାଶେ ଲୋକମାନଙ୍କୁ ପ୍ରସ୍ତୁତ ହେବାକୁ ପଡିବ । ନିଜର କର୍ତ୍ତବ୍ୟ ସହିତ ଅଧିକାର ସମ୍ବନ୍ଧରେ ସଚେତନ ନହେଲେ ସନ୍ତୁଳିତ ବ୍ୟକ୍ତିତ୍ୱ ପ୍ରକଟିତ ହେବ ନାହିଁ । ବ୍ୟକ୍ତି ବାଦୀ ଚଳଣି ସ୍ଥାନରେ ପ୍ରତି କ୍ଷେତ୍ରରେ ପ୍ରତିଯୋଗିତା ହିଁ ହେବ ଉତ୍କର୍ଷର ମାନଦଣ୍ଡ । ନିଜ ଘର ସଜାଡିବା ସହିତ ସାମୂହିକ ଘର ସଜାଡିବା ଯେପରି ଉପେକ୍ଷିତ ନହୁଏ ତାହା ଦେଖିବାକୁ ପଡିବ ।

ସେଥିପାଇଁ ଶିକ୍ଷା, ସାହିତ୍ୟ, ସଂସ୍କୃତି ଏବଂ ପରଂପରା ସବୁଥିରେ ସଂସ୍କାରବାଦୀ ଆଭିମୁଖ୍ୟ ଅଗ୍ରାଧିକାର ପାଇବାକୁ ବାଧ୍ୟ । ଡ଼ାଆଣୀ ଆଲୁଅ ବା ପରୀରାଇଜର କଥା ଟିଭି ଯୁଗରେ ଅପ୍ରାସଙ୍ଗିକ ହୋଇ ନପାରେ , କିନ୍ତୁ ତା ଭିତରେ ଥିବା ଆବେଦନ ଅନୁଭୂତିରୁ ଜୀବନକୁ ଅଧିକ ପ୍ରାସଙ୍ଗିକ ଓ ମହତ୍ତ୍ୱପୂର୍ଣ୍ଣ କରିବା ଲାଗି ବ୍ୟବହାର କରାଯାଇପାରେ ।

ଏହି ପୃଷ୍ଠଭୂମିରେ ଲୋକସାହିତ୍ୟ କିପରି ଜନସଚେତନତା ପ୍ରସାରରେ ସହାୟକ ହୋଇ ପାରିବ ତାହା ବିଚାର କରିବାର ବେଳ ଆସିଛି । ଲୋକସାହିତ୍ୟ ଦେଶକାଳ ପାତ୍ରର ସୀମାବଦ୍ଧତା ଅତିକ୍ରମ କରି ଏବେବି ବଂଚିଛି କିନ୍ତୁ ଗ୍ରାମ୍ୟ ଜୀବନ କ୍ରମଶଃ ନିଶ୍ଚିହ୍ନ ହୋଇ ଆସୁଥିବାରୁ ଏବଂ ସହରୀ ଜୀବନର ପ୍ରଭାବ ପ୍ରସାରିତ ହେଉଥିବାରୁ ଲୋକସାହିତ୍ୟ ମଧ୍ୟରେ ଥିବା ଜୀବନ ସଂପର୍କିତ ସରସ ଉପାଦାନ ସବୁକୁ ଚିହ୍ନଟ କରି ଆଧୁନିକ କାଳରେ ମଧ ଉପଯୋଗ କରାଯାଇପାରିବ । ଏହା କଲାବେଳେ ପ୍ରତି ଜାତିଗୋଷ୍ଠୀର ସାମୂହିକ କାର୍ଯ୍ୟଧାରା ଓ ଚଳଣିର ଅଂଶ ବିଶେଷ ହୋଇ ଯାଇଥିବା ଅନ୍ଧବିଶ୍ୱାସ ଓ କୁସଂସ୍କାର ସବୁର ମୂଳୋତ୍ପାଟନ କରିବା ଆବଶ୍ୟକ ହେବ ।

ସାହିତ୍ୟ ସଂସ୍କାରମୁଖୀ । ଜୀବନର ପୁନର୍ଗଠନରେ ଏହାର ଉପଯୋଗିତା ରହିଛି । ତେଣୁ ଗ୍ରାମ୍ୟ ଜୀବନର ପୁନର୍ଗଠନ କଲାବେଳେ ବ୍ୟକ୍ତିକୁ ଛିନ୍ନମୂଳ ନକରି ତା ଜୀବନ ସହିତ ସମ୍ବନ୍ଧିତ ବିଷୟଗୁଡ଼ିକରୁ ଅଜ୍ଞତା ଓ ଅନ୍ଧବିଶ୍ୱାସକୁ ଅତି ସାବଧାନତା ସହିତ ବାଦ ଦବାକୁ ପଡ଼ିବ । ଏ କାମଟି ସରଳ ବା ସହଜ ନୁହେଁ । ଓଡ଼ିଶାର ଅଶୀଭାଗ ଲୋକ ଗାଁ ରେ ବସବାସ କରନ୍ତି । ସେମାନଙ୍କର ଅର୍ଥନୈତିକ ଉନ୍ନତି ସହିତ ସାମାଜିକ ସଂସ୍କାର ସହଯୁକ୍ତ ନ ହେଲେ ଏକବିଂଶ ଶତାବ୍ଦୀର ସୁବିଧା ସୁଯୋଗ ହାତ ଛଡ଼ା ହୋଇଯିବ । ଏହି ଦୃଷ୍ଟିରୁ ଲୋକସାହିତ୍ୟର ପ୍ରସାର ଏବଂ ପ୍ରଚାର ଆବଶ୍ୟକ । ନାଟକ,ସୁଆଙ୍ଗ, ଗୀତ ଓ ନାଚ ଜନମନକୁ ଅଧିକ ଆକର୍ଷଣ କରେ । ଜୀବନ ଉପରେ ଏସବୁର ପ୍ରଭାବକୁ ଅସ୍ୱୀକାର କରି ହେବ ନାହିଁ । ଲୋକସାହିତ୍ୟର ନିର୍ବାଚିତ ଉପାଦାନ ସବୁକୁ ନାଟକ, ନୃତ୍ୟ ଓ ଗୀତ ମାଧ୍ୟମରେ ପ୍ରସାର କରିବା ସହଜ ଓ ଫଳପ୍ରଦ ହେବ ।

ସାହିତ୍ୟ ଓ ଶିକ୍ଷା କେବଳ ଜୀବନ ଗଢ଼ିବାରେ ସାହଯ୍ୟ କରେ ନାହିଁ, ଏହାକୁ

ଉନ୍ମୁଖ, ସରସ ଓ କ୍ରିୟାଶୀଳ କରିବାରେ ମଧ୍ୟ ସହାୟକ ହୁଏ । ଗଣତାନ୍ତ୍ରିକ ସମାଜରେ ବ୍ୟକ୍ତି ନଗଣ୍ୟ ନୁହେଁ, ସମଷ୍ଟିଗତ ସହମତ ବ୍ୟକ୍ତିମାନଙ୍କର ମତ ଦ୍ୱାରା ଗଠିତ ଓ ପୁଷ୍ଟ ହୁଏ । ଲୋକ ସାହିତ୍ୟରେ ଏକତ୍ରିକରଣ ଓ ସମନ୍ୱୟ ସାଧନ କରିବାର ଶକ୍ତି ରହିଛି । ଧର୍ମ, ଜାତି, ଗୋଷ୍ଠୀ ଓ ଗୋତ୍ରରେ ବିଭାଜିତ ସମାଜର ପୁନଃ ନିର୍ମାଣ ଉର୍ଦ୍ଧ୍ୱମୁଖୀ ସଂସ୍କାରବାଦୀ ସାମାଜିକ ଚେତନା ଉପରେ ନିର୍ଭର କରେ । ଜାତୀୟ ସଂହତି, ଧର୍ମାନୁରାଗ ସହିତ ଧର୍ମନିରପେକ୍ଷତା, ସାଂପ୍ରଦାୟିକ ସଦ୍‌ଭାବନା, ସହିଷ୍ଣୁତା ଓ ସମବାୟିକ ପ୍ରଚେଷ୍ଟା, ଚଳଣିରେ ସାଧୁତା ଏବଂ ଜୀବନଶୈଳୀରେ ସ୍ୱଚ୍ଛତା ଓ ଆତ୍ମନିର୍ଭରଶୀଳତା ଗଣତାନ୍ତ୍ରିକ ଜୀବନ ଧାରା ଓ ମୂଲ୍ୟବୋଧକୁ ପରିପୁଷ୍ଟ କରେ । ଏ ସବୁର ସଫଳ ଉତ୍ତର ଅତୀତ ଦେଇପାରିବ ନାହିଁ । ଯଥାର୍ଥରେ ଏହା କୁହାଯାଇଛି ଯେ, କୃଷି ଓ ଶିଳ୍ପ ର ଉତ୍ପାଦନ କଞ୍ଚାମାଲ ଉପରେ ଯେତିକି ନିର୍ଭର ନକରେ, ତାଠାରୁ ବେଶି ନିର୍ଭର କରେ ଜ୍ଞାନ ଉପରେ । ଏକବିଂଶ ଶତାବ୍ଦୀ ହେବ ଜ୍ଞାନ-ତଥ୍ୟର ଯୁଗ । ଆଗାମୀ ବର୍ଷମାନଙ୍କରେ ଏପରି ଅନେକ ସମସ୍ୟା ଉପୁଜିବ ଯାହାର ସମାଧାନ ଅତୀତ ର ଶ୍ରେଷ୍ଠ ସାହିତ୍ୟରେ ମଧ୍ୟ ନାହିଁ । ସୁତରାଂ ଶିଶୁମାନଙ୍କୁ କେବଳ ଅକ୍ଷର ଶିକ୍ଷା ନଦେଇ ସେମାନେ କିପରି ତାହା ଶିଖିବେ, କିପରି ଦେଖିବେ ଏବଂ କିପରି ବିଶ୍ଳେଷଣ କରିବେ ସେହି ଶିକ୍ଷା ପ୍ରଦାନ କରିବା ଅଧିକ ହିତକର ହେବ ।

ଶିକ୍ଷାର ଆଭିମୁଖ୍ୟ ମଧ୍ୟ ବଦଳିବା ଉଚିତ । ବ୍ୟକ୍ତିକୁ ପରମୁଖାପେକ୍ଷୀ ନ କରି ସ୍ୱାବଲମ୍ବୀ ହେବା ପାଇଁ ଯଥେଷ୍ଟ ଉପାଦାନ ଶିକ୍ଷା ପ୍ରଣାଳୀ ଓ ପାଠ୍ୟ ପୁସ୍ତକ ତଥା ପ୍ରଶିକ୍ଷଣ ବ୍ୟବସ୍ଥାରେ ନଥିଲେ ଜାତି ତଥା ବ୍ୟକ୍ତି ର ଉତ୍ପାଦନ ଶକ୍ତିର ସମୁଚିତ ବିକାଶ ସମ୍ଭବ ନୁହେଁ ।

ଲୋକ ସାହିତ୍ୟର ସରସ ଓ ଉପାଦେୟ ସାରାଂଶ ର ସଫଳ ଉପଯୋଗ ଦ୍ୱାରା ଏହି ଜାତୀୟ କାର୍ଯ୍ୟର ଗତି ବୃଦ୍ଧି କରାଯାଇ ପାରିବ । ଏଠାରେ ଗାନ୍ଧିଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି, ''ସା ବିଦ୍ୟା ଯା ବିମୁକ୍ତୟେ' ବୋଲି ଯେଉଁ ପ୍ରାଚୀନ ଉକ୍ତିଟି ରହିଛି, ପୂର୍ବପରି ଆଜି ମଧ୍ୟ ତାହାର ମହତ୍ତ୍ୱ ରହିଛି । ଶିକ୍ଷା କହିଲେ ଏଠାରେ କେବଳ ଜ୍ଞାନକୁ ବୁଝାଉନାହିଁ ବା ମୁକ୍ତି କହିଲେ କେବଳ ମୃତ୍ୟୁ ଅନ୍ତେ କୌଣସି ଆଧ୍ୟାତ୍ମିକ ମୁକ୍ତିକୁ ବୁଝାଉନାହିଁ । ମନୁଷ୍ୟ ସମାଜର ସେବାଲାଗି ଯାହା କିଛି ଉପଯୋଗୀ, ସେହି ସବୁକିଛିର ଯାବତୀୟ ପ୍ରଶିକ୍ଷଣକୁ ଆମେ ଜ୍ଞାନ ବୋଲି କହିବା ଏବଂ ଆମର ଏହି ଜୀବନରେ ମଧ୍ୟ ଯାବତୀୟ ପ୍ରକାରର ଦାସତ୍ୱ ରୁ ମୁକ୍ତି ବୋଲି କହିବା । ଦାସତ୍ୱ ଦୁଇ ପ୍ରକାରର; ବାହାରର କୌଣସି ଆଧିପତ୍ୟ ପାଖରେ ଦାସତ୍ୱ ଏବଂ ଆପଣାର କୃତ୍ରିମ ଆବଶ୍ୟକତା ଗୁଡିକ ପାଖରେ ଦାସତ୍ୱ । ଏହି ଆଦର୍ଶର ଅନୁଧାବନରେ ଯେଉଁ ଜ୍ଞାନ ଅର୍ଜନ କରାଯାଏ କେବଳ ତାହାକୁ ହିଁ ଯଥାର୍ଥ ଅଧ୍ୟୟନ ବୋଲି କୁହାଯିବ ।''

ସାକ୍ଷରତା ସହିତ ସଚେତନତା ପ୍ରସାର କରିବା ସାର୍ବଜନୀନ ଶିକ୍ଷାର ଲକ୍ଷ୍ୟ । ଲୋକ ସାହିତ୍ୟ କୁ ଏଥିରେ ସଫଳତାର ସହିତ ଉପଯୋଗ କରିବା ଦ୍ୱାରା ଉଭୟ ଲକ୍ଷ୍ୟ ହାସଲ କରାଯାଇ ପାରିବ ।

# ଓଡ଼ିଶାର ଲୋକ ନୃତ୍ୟ ଓ ଲୋକ ନାଟକ

ଓଡିଶାର ଗାଁ ଗହଳରେ ବହୁ ଲୋକ କଥା, ଲୋକନୃତ୍ୟ ଏବଂ ଲୋକ ଗୀତିର ପ୍ରଚଳନ ରହିଛି । ଗୋଟିଏ ଗୋଟିଏ ଅଞ୍ଚଳରେ ଗୋଟିଏ ଗୋଟିଏ ପ୍ରକାରର ଲୋକକଥା ଓ ଲୋକନୃତ୍ୟ ରହିଛି । ଯେମିତି ଦକ୍ଷିଣ ଓଡ଼ିଶାରେ ଥିବା ଲୋକ କଥା ଆଉ ଲୋକନୃତ୍ୟ ସେ ଅଞ୍ଚଳର ଲୋକଙ୍କର ଚଳଣି ଆଉ ଭାଷାକୁ ନେଇ ସୃଷ୍ଟି ହୋଇଥାଏ, ପଶ୍ଚିମ ଓଡ଼ିଶାର ଭାଷା ଆଉ ଚଳଣିକୁ ନେଇ ସେ ଅଞ୍ଚଳର ଲୋକ କଥା ଓ ଲୋକ ନୃତ୍ୟର ପ୍ରଚଳନ ହୋଇ ଥାଏ । ଦକ୍ଷିଣ ଓଡ଼ିଶାରେ ଦଣ୍ଡ ନାଚର ପ୍ରଚଳନ ଥିବା ବେଳେ ପଶ୍ଚିମରେ ଡ଼ାଲ ଖାଇ ନାଚ ଏବଂ ଉପକୂଳ କଟକ, ପୁରୀ ଅଞ୍ଚଳରେ ରଜ ଗୀତ ଓ କୁଆଁର ପୁନେଇଁ ଗୀତର ବୈଶିଷ୍ଟ୍ୟ ରହିଛି । ଠିକ୍ ସେହି ଭଳି ଢ଼େଙ୍କାନାଳ ଜିଲ୍ଲାର ପାଲଲହଡ଼ା, ଆଠମଲ୍ଲିକ ଅଞ୍ଚଳରେ ରାବଣ ଛାୟା ନୃତ୍ୟର ପ୍ରଭାବ, ପ୍ରସାର ଓ ପ୍ରଚଳନ ଅଧିକ । ଉତ୍ତର ଓଡ଼ିଶା ବିଶେଷ କରି ମୟୂରଭଞ୍ଜରେ ଛଉ ନୃତ୍ୟ ଲୋକ ନୃତ୍ୟ ଭାବେ ପ୍ରସିଦ୍ଧି ଲାଭ କରିଛି ।

ଲୋକ କଥା ଅପେକ୍ଷା ଲୋକ ନୃତ୍ୟ ଲୋକଙ୍କ ମଧ୍ୟରେ ଅଧିକ ଆଦର ଲାଭ କରିଥାଏ । ବିଶେଷ କରି ଏହା ଦୃଶ୍ୟକାବ୍ୟ ଆକାରରେ ପରିବେଷିତ ହେଉଥିବାରୁ ଲୋକଙ୍କୁ ଅଧିକ ସମୟ ଧରି ଆକୃଷ୍ଟ କରି ରଖିବାରେ ସମର୍ଥ ହୋଇ ପାରିଥାଏ ।

ଲୋକ ନୃତ୍ୟ ଗୁଡ଼ିକ ମଧ୍ୟରେ ଦଣ୍ଡ ନାଟ ସବୁଠାରୁ ଜଣାଶୁଣା । କେବଳ ଦଣ୍ଡ ନାଟ ନୁହେଁ ଛଉ ଓ ରାବଣ ଛାୟା ଆଦି ଲୋକ ନୃତ୍ୟଗୁଡ଼ିକ ଓଡ଼ିଶାର ଧର୍ମୀୟ ପରମ୍ପରା ଉପରେ ପ୍ରତିଷ୍ଠିତ । ଏହା ବ୍ୟତୀତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଥିବା ଅନେକ ଲୋକ ନୃତ୍ୟ ଧର୍ମକୁ  ଆଧାର କରି ଓଡ଼ିଆ ଲୋକ ସଂସ୍କୃତିର ପ୍ରଚାର ଲୋକ ନୃତ୍ୟର ପ୍ରଧାନ ଉଦ୍ଦେଶ୍ୟ ।

ଦଣ୍ଡନାଟ ଓଡ଼ିଶାର ସବୁଠାରୁ ପ୍ରାଚୀନ ଲୋକ ନୃତ୍ୟ । ବହୁ ଲୋକ ନାଟ୍ୟକଳା ଦଣ୍ଡ ନାଟର ଉପାଦାନ ନେଇ ସମୃଦ୍ଧ । ଦଣ୍ଡ ନାଟର ଦୁଇଟି ସ୍ଥାୟୀ ଚରିତ୍ର ହେଲା ବୀଣାକାର ଓ ବାଇଧନ । ବୀଣାକାରରୁ  ନାଟକର ସୂତ୍ରଧର ସୃଷ୍ଟି ହୋଇଛି । ଧର୍ମକୁ ଆଧାର କରି ବୀଣାକାର ଦଣ୍ଡନାଟ ଆରମ୍ଭରେ ଏହାର ନିୟମ ଓ ବିଷୟ ବସ୍ତୁ ପ୍ରଭୃତି ସୂଚିତ କରେ ।

ଦଣ୍ଡନାଟର ଚଢ଼େୟା-ଚଢ଼େୟାଣୀ, ଶବର-ଶବରୁଣୀ , ପତ୍ର ସଉରା ଓ ଶଉରୁଣୀ ପ୍ରଭୃତି ନାଚ ଯେ କୌଣସି ଉତ୍ସବ, ମେଳା ବା ଯାତ୍ରାରେ ପ୍ରଦର୍ଶିତ ହୋଇ ଥାଏ । ଏହି ସବୁ ନୃତ୍ୟ ପାଇଁ ବିଶେଷଭାବରେ ତାଳ, ଛନ୍ଦ ଓ ନିୟମର ଆବଶ୍ୟକତା ନଥିବାରୁ ସାଧାରଣ ଲୋକଙ୍କ ପକ୍ଷରେ ଏହା ଗାଇବା ଓ ଅଭିନୟ କରିବାରେ ଅସୁବିଧା ହୋଇ ନଥାଏ । ଦଣ୍ଡନୃତ୍ୟ ପରମ୍ପରାରେ  ନାରୀମାନଙ୍କର ଅଂଶଗ୍ରହଣ ନିଷେଧ ଓ ପରମ୍ପରା ବିରୋଧୀ ।

ଦଣ୍ଡନାଟର ଶବର ଶବରୁଣୀ ନୃତ୍ୟ 'ଛଉ' ନୃତ୍ୟର ଏକ ଅଂଶ ବିଶେଷ । 'ଛଉ'ର ଶବର ନାଚ ବିଶେଷ ପ୍ରସିଦ୍ଧ । ଏହି ଶବରର ମହାବଳ ବାଘ ଶୀକାର ନୃତ୍ୟ ଶରୀରରେ ରୋମାଞ୍ଚ ସୃଷ୍ଟି କରିଥାଏ । ନୃତ୍ୟଟି ସଂପୂର୍ଣ୍ଣ ରୂପେ ଲୌକିକ ପରିବେଶ ଏବଂ ସଂସ୍କୃତି ଆଧାରିତ ଏକକ ନୃତ୍ୟ । ଏଥିରେ ଆରଣ୍ୟକ ଜୀବନର ପ୍ରତିଫଳନ ସ୍ପଷ୍ଟ ପରିଦୃଷ୍ଟ ।

ଦଣ୍ଡନାଟର ବେଶ ପୋଷାକ ନିତାନ୍ତ ସାଧାରଣ । କଳାକାରମାନେ କଷା ଲୁଗା ଓ ଗାମୁଛା ୧୫ ଦିନ ପର୍ଯ୍ୟନ୍ତ ଧାରଣ କରନ୍ତି । ଗୋଟିଏ ଗୋଟିଏ ଦଣ୍ଡ ପତାକା, ମୟୂର ଚନ୍ଦ୍ରିକା ଗୁଛ ଓ ବାଉଁଶ ବେତ ସେମାନଙ୍କ ନିକଟରେ ଥାଏ । ଧୂଳି ଦଣ୍ଡ, ପାଣି ଦଣ୍ଡ, ଅଗ୍ନି ଦଣ୍ଡ ଓ ବନ ଦଣ୍ଡ ସମୟରେ କୌଣସି ସ୍ୱତନ୍ତ୍ର ବେଶ ପୋଷାକର ଆବଶ୍ୟକତା ପଡ଼େ ନାହିଁ । କିନ୍ତୁ ରାତିରେ ହେଉଥିବା ନନ୍ଦୀ, ଇଶ୍ୱର, ପାର୍ବତୀ, ଚଢ଼େୟା, ଚଢ଼େୟାଣୀ, ଶବର, ଶବରୁଣୀ, ପତ୍ରଶଉରା ଓ ପତ୍ରଶଉରାଣୀ ପାଇଁ ଚରିତ୍ର ଅନୁସାରେ ବେଶ ପୋଷାକ ଦରକାର ହୋଇଥାଏ ।

ଦଣ୍ଡ ନାଟରେ ଢ଼ୋଲ, ମହୁରୀ ଓ ଝାଞ୍ଜ ବାଦ୍ୟ ପ୍ରଥମେ ହାଡ଼ିମାନେ ବଜାଉଥିଲେ । ପରେ ଏହାକୁ ଅନ୍ୟ ଜାତିର ଲୋକ ବଜାଉଛନ୍ତି । ଢୋଲ ଦଣ୍ଡ ନାଟର ମୁଖ୍ୟ ବାଦ୍ୟଯନ୍ତ୍ର । ମହୁରୀ ଓ ଝାଞ୍ଜ ଏହାର ସହାୟକ ବାଦ୍ୟ । ଢୋଲ ବାଦକର ବାଦନ ପ୍ରକ୍ରିୟା ସ୍ୱତନ୍ତ୍ର । ସେ ତାର ନିଜସ୍ୱ ଶୈଳୀରେ ତାଳ ସୃଷ୍ଟି କରି ନୃତ୍ୟକୁ ଛନ୍ଦାୟିତ କରେ ।

ଦଣ୍ଡ ନାଟ ଭଳି ରାବଣ ଛାୟା ଏକ ପ୍ରାଚୀନ ଲୋକ ନୃତ୍ୟ । ଏହା ବିଶେଷଭାବେ ଢେଙ୍କାନାଳ ଓ ଅନୁଗୋଳ ଜିଲ୍ଲାର ପାଲଲହଡ଼ା ଓ ଆଠମଲ୍ଲିକ

ଅଞ୍ଚଳରେ ଦେଖାଯାଏ । ଏହା କ୍ରମେ ଲୋପ ପାଇ ଆସୁଥିଲା । ମାତ୍ର ଗତ ଦଶବର୍ଷ ତଳେ ସରକାର ଏହି ଲୁପ୍ତ ପ୍ରାୟ ଲୋକ ନୃତ୍ୟର ପୁନରୁଦ୍ଧାର କରିଛନ୍ତି । ରାବଣ ଛାୟା ମୂଳତଃ ଏକ ପିତୁଳା ନାଚ । ଧଳା ପରଦା ପଛରେ ପିତୁଳିକୁ ନଚାଯାଇ ଥାଏ ଏବଂ ସେହି ଛାୟା ପରଦା ଉପରେ ନାଚ କରେ । ମୁଖ୍ୟତଃ ବିଶ୍ୱନାଥ ଖୁଣ୍ଟିଆ ରଚିତ ରାମାୟଣ ବିଷୟ ବସ୍ତୁ ଉପରେ ଏହି ନୃତ୍ୟ ପ୍ରଦର୍ଶନ କରାଯାଇଥାଏ । ସାତଖଣ୍ଡ ରାମାୟଣ ବୋଲି ଅଭିନୟ କରିବାରେ ପ୍ରାୟ ୮ / ୧୦ ଦିନ ଲାଗିଯାଇଥାଏ । ଏହାର ମୂଳ ବାଦ୍ୟ ହେଲା ଖଞ୍ଜଣି ।

ରାବଣଛାୟାରେ ବ୍ୟବହୃତ ପିତୁଳିଗୁଡିକ ହରିଣ ଚମଡ଼ାରେ ନିର୍ମିତ ହୋଇଥାଏ । ପ୍ରତି ପିତୁଳା ବା କଣ୍ଢେଇର ଉଚ୍ଚତା ଫୁଟେ ଦେଢ ଫୁଟ ହୋଇଥାଏ । ରାମାୟଣର ଚରିତ୍ର ଅନୁସାରେ କଣ୍ଢେଇ ତିଆରି ହୋଇଥାଏ । ଇଂରାଜୀରେ ଏହି ନୃତ୍ୟକୁ Shadow Pup-pet ବୋଲି କୁହାଯାଇଥାଏ । ଏହି ନୃତ୍ୟ କେବେ ଠିକ୍ ଆରମ୍ଭ ହେଲା ବୋଲି ନିର୍ଦ୍ଦିଷ୍ଟ ଭାବେ କହିବା କଷ୍ଟକର ହେଲେ ମଧ୍ୟ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରୁ ଏହା ପ୍ରଚଳିତ ବୋଲି କୁହାଯାଇଥାଏ । ଏହି ନୃତ୍ୟରେ ଜଣେ ମୁଖ୍ୟ ଖଞ୍ଜଣି ବାଦକ ରହିଥାଏ । ତାକୁ ସାହାଯ୍ୟ କରିବା ପାଇଁ ଆଉ ତିନି ଚାରି ଜଣ ବାଦକ ପେଁକାଳି ଓ ଅନ୍ୟ ଗ୍ରାମବାଦ୍ୟ ବଜାଇଥାନ୍ତି ।

ଓଡିଶାର ଆଉ ଏକ ଲୋକ ନୃତ୍ୟ ହେଲା 'ଛଉ' । ଏହା ଏବେ ଏକ ଜନପ୍ରିୟ ନୃତ୍ୟକଳାରେ ପରିଣତ ହେଲାଣି । ଏହାର ଉତ୍ପତ୍ତି ଦଣ୍ଡନାଟ ବା ରାବଣଛାୟା ଭଳି ଏତେ ପ୍ରାଚୀନ ନହେଲେ ମଧ୍ୟ ଅନ୍ତତଃ ଶହେ ବର୍ଷରୁ ଅଧିକ କାଳ ହେବ ଏହା ପ୍ରଦର୍ଶିତ ହୋଇ ଆସୁଛି । ଏହା ମୁଖ୍ୟତଃ ଏକ ପାଇକ ନାଚ । ଛଉ ଛାଉଣୀର ଅପଭ୍ରଂଶ ବୋଲି

କେତେକ କହିଥାନ୍ତି । ରାଜା-ମହାରାଜାମାନେ ଯୁଦ୍ଧରେ ଗଲା ବେଳେ ବା ପାରିଧିରେ ଗଲା ବେଳେ ବାଟରେ ଯେଉଁ ଛାଉଣୀ ନିର୍ମିତ ହୋଇଥାଏ - ସେଇଠି ମନୋରଂଜନ ପାଇଁ ଏହି ନୃତ୍ୟ ହୋଇଥାଏ । ତେଣୁ ଏହା 'ଛଉ' ବୋଲି କୁହାଯାଇଥାଏ ।

ଛଉର ମୁଖ୍ୟ ବାଦ୍ୟଯନ୍ତ୍ର ହେଲା ଢୋଲ । ବିଭିନ୍ନ ପୌରାଣିକ ଆଖ୍ୟାନକୁ ନେଇ ଛଉନୃତ୍ୟର ବିଷୟ ବସ୍ତୁ ତିଆରି ହୋଇଥାଏ । ଏହା ମୁଖ୍ୟତଃ ଏକ ପରିଶ୍ରମଜନିତ ନୃତ୍ୟ ଏବଂ ମାଂସପେଶୀର କାମ ବେଶୀ ଥିବାରୁ ନାରୀମାନଙ୍କ ପାଇଁ ଏହି ନୃତ୍ୟ ନିଷିଦ୍ଧ । ଅନେକ ସମୟରେ ଏଥିରେ ଶିବ ତାଣ୍ଡବ ଓ ସେହି ଧରଣର ନୃତ୍ୟ ପରିବେଷଣ ହୋଥାଏ । ଗୋଟିଏ ଗୋଟିଏ ଗରିଲା ଯୁଦ୍ଧ ନୃତ୍ୟରେ ଏକ ସମୟରେ ଷାଠିଏ ରୁ ସତୁରୀ ଜଣ ପର୍ଯ୍ୟନ୍ତ କଳାକାର ଅଂଶ ଗ୍ରହଣ କରିଥାନ୍ତି । 'ଗରିଲା ଯୁଦ୍ଧ' ଛଉ ନୃତ୍ୟରେ ଏକ ବିଶେଷ ନୃତ୍ୟ । ଏହି ନୃତ୍ୟକୁ ଯୁଦ୍ଧର ଏକ ଅଂଶରୂପେ ପ୍ରଦର୍ଶିତ କରାଯାଇଥାଏ । ତେଣୁ 'ଛଉ' ନୃତ୍ୟ ରାଜା-ମହାରାଜାଙ୍କର ଯୁଦ୍ଧବେଳେ ସୈନିକମାନଙ୍କ ମନୋବଳକୁ ଅତୁଟ ରଖିବା ଦିଗରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ନୂତନ ଉତ୍ସାହ ଯୋଗାଇଥାଏ । ତା ସଙ୍ଗେ ସଙ୍ଗେ ରାଜାଙ୍କୀ ମନୋରଂଜନ ପାଇଁ ଏହା ଖୋରାକ ଯୋଗାଇଥାଏ ।

ଲୋକନୃତ୍ୟ ଓ ଲୋକ ନାଟକ ଗୁଡ଼ିକରେ ଗୋଟିଏ ଗୋଟିଏ ଅଞ୍ଚଳର ଭାଷା, ସାହିତ୍ୟ, ସଂସ୍କୃତି, ଜାତି, ଧର୍ମ, ଚାଲିଚଳନ, ପୂଜାପାର୍ବଣ, ବାଣିଜ୍ୟ-ବ୍ୟବସାୟ, ଧର୍ମ ବିଶ୍ୱାସ, ଆଚାର-ବ୍ୟବହାର ଏବଂ ସ୍ୱାସ୍ଥ୍ୟରକ୍ଷା ତଥା ଗଛ ବୃକ୍ଷ ସଂକ୍ରାନ୍ତୀୟ ଅନେକ ବିଷୟର ସୂଚନା ମିଳିଥାଏ ।

ଆମ ଗାଁ ଗହଳରେ ଥିବା ସାମାଜିକ କୁସଂସ୍କାର, ଅନ୍ଧ ବିଶ୍ୱାସ ଆଦି ସମ୍ପର୍କରେ ମଧ୍ୟ ଏହି ଲୋକ ନୃତ୍ୟ ବା ଲୋକ ନାଟକରୁ ସୂଚନା ମିଳିଥାଏ । ଦରିଦ୍ରତା, ଅଶିକ୍ଷା, ନରବଳି, ଯୌତୁକ ପ୍ରଥା ଆଦି ଅନେକ ବିଷାକ୍ତ ପ୍ରଥା ସମ୍ପର୍କରେ କେତେକ ଲୋକ ନୃତ୍ୟରେ ସୂଚନା ଦିଆଯାଇଥାଏ ।

ଏହି ନୃତ୍ୟ ବା ନାଟକରେ ଅଂଶ ଗ୍ରହଣ କରୁଥିବା ବ୍ୟକ୍ତିମାନେ ନୃତ୍ୟ ବା ନାଟକ ପୂର୍ବରୁ ନିଜକୁ ଶୁଦ୍ଧ କରିଥାନ୍ତି । ଦଣ୍ଡ ନାଟରେ ଭାଗ ନେଉଥିବା ବ୍ୟକ୍ତିମାନେ ନାଟ ଆରମ୍ଭ ହେବାର ତେରଦିନ ପୂର୍ବରୁ ଗୃହତ୍ୟାଗ କରି ମା' କାଳୀଙ୍କ ଛତ୍ରଛାୟାତଳେ ଗୋଟିଏ ମା'ର ସନ୍ତାନ ରୂପେ ମନ୍ଦିର ଭିତରେ ରୁହନ୍ତି । ପ୍ରତ୍ୟହ ଷୋଳ ପ୍ରକାର ଦଣ୍ଡ ଓ ଦଣ୍ଡବତ ପାଳନ କରି ମେଷ ମାସାନ୍ତ ଦିନ (କେତେ ସ୍ଥାନରେ ବିଷୁବ ସଂକ୍ରାନ୍ତି) ମେରୁ ପର୍ବରେ ଅଗ୍ନି ପରୀକ୍ଷା ଦେଇଥାନ୍ତି । କଟକ, ପୁରୀ ଓ ଗଞ୍ଜାମ ଆଦି ଜିଲ୍ଲାରେ ଏହି ପର୍ବକୁ ଝାମୁଯାତ୍ରା କୁହାଯାଏ ।

ଠିକ୍ ସେହିଭଳି ରାମଲୀଳାରେ ଅଂଶ ଗ୍ରହଣ କରୁଥିବା କଳାକାରମାନେ ରାମ ନବମୀ ଆରମ୍ଭ ହେବାର ମାସକ ପୂର୍ବରୁ ହବିଷାନ୍ନ ଖାଇ ନିଜର ଆଚରଣ ଶୁଦ୍ଧି କରନ୍ତି । ଭଗବତ୍ ବିଶ୍ୱାସ ମନଭିତରେ ଦୃଢ଼ କରିବା ପାଇଁ ଏ ପ୍ରକାର ଆତ୍ମାଶୁଦ୍ଧିର ଆବଶ୍ୟକତା ଥାଏ ବୋଲି ସାଧାରଣ ଭାବେ କୁହାଯାଇଥାଏ ।

# ଲୋକସାହିତ୍ୟ ମାଧ୍ୟମରେ ସାକ୍ଷରତା : ଏକ ନୂତନ ଦୃଷ୍ଟିଭଙ୍ଗୀ

କୋରାପୁଟ ନବରଙ୍ଗପୁର ସବଡିଭିଜନ୍ ର ପାମ୍ପଡହାଣ୍ଡି ଠାରେ ଏକ ପ୍ରାଥମିକ ବିଦ୍ୟାଳୟରେ ବିବେକାନନ୍ଦଙ୍କ ସଂପର୍କରେ କହିବାକୁ ଯାଇ ଲକ୍ଷ୍ୟକଲି, ପିଲାମାନେ କେହି ଶୁଣୁନାହାନ୍ତି । ଦୂରରେ କେତେଗୁଡିଏ ଲଙ୍ଗଳା ପିଲା; ତେନ୍ତୁଳି ଗଛକୁ ଢେଲା ମାରୁଛନ୍ତି । କ'ଣ ଘଟୁଛି ବୋଲି ପାଖ ଗାଁରୁ ଲୋକ ଗୁଡିଏ ଜମି ଯାଇଥାନ୍ତି । ସେମାନେ ଶ୍ରୀ ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କର ଫଟୋକୁ ଦେଖୁଥାନ୍ତି । ମନ୍ଦିର, ମସଜିଦ୍ ଓ ଗୀର୍ଜାର ମିଶ୍ରିତ ଏକ ସୁନ୍ଦର ପେଣ୍ଟିଂକୁ ଆବାକାବା ହୋଇ ଚାହୁଁଥାନ୍ତି ।

କିଛି ସାକ୍ଷର ଓ କିଛି ନିରକ୍ଷର ମାନଙ୍କୁ କେମିତି ବୁଝାଇବାକୁ ହେବ, ତାର ଏକ ଉଦାହରଣ ସ୍ୱାମୀ ବିବେକାନନ୍ଦଙ୍କ କଥାରୁ ମନେ ପଡିଲା । ସ୍ୱାମୀଜୀ କହିଥିଲେ, ''ସାକ୍ଷର କରିବା ପାଇଁ ପ୍ରଥମେ ଗାଁ କୁ ଗାଁ ଯାଅ । ସେମାନଙ୍କ ବୁଝିପାରିବା ଭଳି

ଭାଷାରେ ବହି ପ୍ରସ୍ତୁତକରି ନିଅ । ଯଦି ପାର, ସେମାନଙ୍କ ମଧ୍ୟରୁ ଶିକ୍ଷକ ବାଛ । ସେମାନଙ୍କୁ ତାଲିମ ଦେଇ, ସେମାନଙ୍କ ପରିବେଶ ମଧ୍ୟରେ, ସେମାନଙ୍କର ଅବସର ସମୟରେ ଶିକ୍ଷାଦିଅ । ସେହି ପୁସ୍ତକରେ ଅନେକ ଛବିଦେଇ, ତାଙ୍କୁ ବୁଝିବାରେ ସାହାଯ୍ୟ କର ।'' ଏହି କଥାଟିକୁ ଯଦି ଆମେ ଠିକ୍ ଭାବେ ବୁଝିପାରିବା, ତେବେ ସାକ୍ଷରତା ପ୍ରସାର ହେବ । ଲୋକସାହିତ୍ୟ ଭାଷା ସରଳ, ସାବଲୀଳ ଓ ସହଜରେ ବୁଝିହୁଏ । ଯାହା ସହଜରେ ବୁଝାଯାଏ ଓ ଲୋକର ମନରେ ଛାପ ପକାଏ, ତାକୁ ସେ ମନେ ରଖେ । କିନ୍ତୁ ସେହି ସାହିତ୍ୟକୁ ନେଇ କିପରି ସାକ୍ଷରତା ପ୍ରସାର କରାଯାଇପାରିବ ? ଅକ୍ଷର ନ ଶିଖି ହୁଏତ ବହୁକଥା ଜଣେ ଲୋକମନେ ରଖି ପାରେ ଓ ଉପଦେଶ ଦେଇପାରେ ।

ଲୋକସାହିତ୍ୟରେ ବହୁଳଭାବେ ପୁରାଣ, ଢଗଢ଼ମାଳି, ଲୋକନାଟକ, ପହଳି ଦେଖିବାକୁ ମିଳେ । କିନ୍ତୁ ତାହା କିପରି ସାକ୍ଷରତା ପ୍ରସାରଣରେ ସାହାଯ୍ୟ କରିବ, ଏହା ବିଚାର କରିବା । ଓଡିଶାର ବିଭିନ୍ନ ଅଞ୍ଚଳରେ ଲୋକଭାଷା ଓ ଲୋକକଥା ପ୍ରଚଳିତ । ପ୍ରାୟ ସବୁ ସାହିତ୍ୟରେ ଲୋକମାନଙ୍କ ପାଇଁ ବାର୍ତ୍ତା ରହିଛି । କିନ୍ତୁ ଯାହା ଅଧିକ ପ୍ରଚଳିତ, ତାକୁ ପ୍ରଥମେ ସାକ୍ଷରତା ମାଧ୍ୟମକୁ ଆଣିବାକୁ ହେବ । ପ୍ରତ୍ୟେକ ଅଞ୍ଚଳର ଲୋକକଥାକୁ ନେଇ ସେହି ଅଞ୍ଚଳର ଭାଷାରେ ସେହି ସ୍ଥାନ ଲୋକଙ୍କ ପାଇଁ ପୁସ୍ତକ ପ୍ରକାଶ ଦରକାର । ସାକ୍ଷରତା ଅଭିଯାନ କୁ ଗୋଟିଏ ମାପକାଠିରେ ମପାଯାଇ ପାରିବ ନାହିଁ । ଅର୍ଥାତ୍ ଗୋଟିଏ ପ୍ରକାର ସାକ୍ଷର ପୁସ୍ତକ ଗୋଟିଏ ରାଜ୍ୟର ସବୁ ଅଞ୍ଚଳର ଲୋକଙ୍କ ନିକଟରେ ଆଦୃତ ହେବନି । କାରଣ ଲୋକକଥା ଓ ଲୋକଭାଷା ଭିନ୍ନ ଭିନ୍ନ ।

ଲୋକକଥାକୁ ଗାଁର ଭାଷାରେ ଲେଖିଲେ ମଧ ଯେଉଁ ଲୋକମାନଙ୍କୁ ଶିକ୍ଷା ଦିଆଯିବ, ସେମାନେ ତାଙ୍କର ଲୋକଙ୍କୁ ଶୁଣିବେ । ତେଣୁ ଲୋକ ସାହିତ୍ୟକୁ ପ୍ରସାର କରିବା ପାଇଁ ବା ସେହି ସାହିତ୍ୟ ମାଧ୍ୟମରେ ସାକ୍ଷରତା ପାଇଁ, ସେହି ଲୋକମାନଙ୍କ ମଧରୁ ତାଲିମ ପ୍ରାପ୍ତ ଲୋକଙ୍କୁ ଶିକ୍ଷକଭାବେ ନିଯୁକ୍ତି ଦେବା ଉଚିତ ।

ଲୋକକଥା, ପହଳି ବା ଢଗଢମାଳି କହିବା ବେଳେ ବିଶେଷ ଭାବେ ଛବିର ଆଶ୍ରା ନେବା ଉଚିତ । ନବସାକ୍ଷର ମାନେ ପରିପକ୍ୱ ଅବସ୍ଥାରେ ପାଠପଢିବା ପାଇଁ ଆସୁଥିବା ହେତୁ, ସେମାନେ ବିଷୟବସ୍ତୁ ବୁଝିବାରେ ଅସୁବିଧା ହୁଏନି । ତେଣୁ ଲୋକକଥା, ପହଳି, ଢଗଢମାଳି ବା ପୁରାଣ କୁ ବର୍ଣ୍ଣନା କରିବାବେଳେ ଛବି ବହୁଳ ଭାବେ ଦେବା ଉଚିତ ।

ଲୋକସାହିତ୍ୟମାଧମରେ ସାକ୍ଷରତା ପ୍ରସାର କରିବାକୁ ଏକ ପ୍ରକୃଷ୍ଟ ଉପାୟ ହେଉଛି ନବସାକ୍ଷର ପାଇଁ ଆସୁଥିବା ଲୋକମାନଙ୍କ ସହିତ ସେମାନଙ୍କର ନାତିନାତୁଣୀ ବା ପୁଅଝିଅଙ୍କୁ ଏକାଠିମିଶାଇ ଶିକ୍ଷା ଦେବା । ଏହା ଦ୍ୱାରା ପ୍ରାଥମିକ ସ୍ତରରେ ଶିକ୍ଷାଦେବାର ଯେଉଁ ବ୍ୟବସ୍ଥା ରହିଛି, ତାହା ପୂରଣ ହୋଇ ପାରିବ ।

ଯେଉଁମାନେ ସାକ୍ଷର ହେବାକୁ ଆସୁଛନ୍ତି; ବହୁକ୍ଷେତ୍ରରେ ସେମାନଙ୍କର ପିଲାମାନେ ମଧ ବିଦ୍ୟାଳୟକୁ ଯାଆନ୍ତି ନାହିଁ ଏବଂ ଆର୍ଥିକ ଅନଟନ ହେତୁ ସେମାନେ ବାପମାଆଙ୍କୁ ରୋଜଗାରରେ ସାହାଯ୍ୟ କରୁଥିବା ହେତୁ, ସେମାନଙ୍କୁ ଏହି ସାକ୍ଷରତା ଅଭିଯାନରେ ସାମିଲ କରିବା ଆବଶ୍ୟକ ।

ଓଡ଼ିଶାରେ ପ୍ରାୟ ସାଢେ ତିନିଲକ୍ଷ ଶିଶୁଶ୍ରମିକ ରହିଥିବାର ଏକ ବିବୃତି ବିଧାନ ସଭା ଗୃହରେ ଶ୍ରମମନ୍ତ୍ରୀ ଉପସ୍ଥାପିତ କରିଛନ୍ତି । ସର୍ଭେରୁ ଦେଖାଯାଇଛି ଯେ ଏମାନଙ୍କ ମଧ୍ୟରୁ ଶତକଡ଼ା ୫୦%ଭାଗ ସାକ୍ଷର ନୁହନ୍ତି । ଯଦି ଦେଢ଼ ଲକ୍ଷ ଲୋକ ଓ ଶିଶୁଶ୍ରମିକ ନିରକ୍ଷରା ହୋଇଥାନ୍ତି ତେବେ ସେମାନଙ୍କର ବାପା ମାଆ ମଧ୍ୟ ସାକ୍ଷର ହୋଇ ନପାରିଥାଆନ୍ତି । ଏଣୁ ଶିଶୁ ସହିତ ବାପା ମା'କୁ ଶିକ୍ଷାଦେବା ଆବଶ୍ୟକ ବୋଧ ହୁଏ । ଆମ ଲୋକସାହିତ୍ୟରେ ଥିବା ଏକଧାରାକୁ ଆମ ସାକ୍ଷରତା ପ୍ରଣାଳୀରେ ଅନ୍ତର୍ଭୁକ୍ତ କରାଯାଇ ପାରିଲେ, ଦୁଇଟି ଉଦ୍ଦେଶ୍ୟ ସଫଳ ହେବ । ପ୍ରଥମତଃ ଯେଉଁମାନେ ବର୍ତ୍ତମାନ ସାକ୍ଷର ନୁହନ୍ତି ଅଥଚ ବୃଦ୍ଧ, ସେମାନଙ୍କୁ ସାକ୍ଷର କରାଯାଇ ପାରିବ ଏବଂ ସେମାନଙ୍କ ଭବିଷ୍ୟତକୁ ଆଲୋକରେ ଆଲୋକିତ କରିହେବ ।

# ଜନଶିକ୍ଷାରେ·ଓଡ଼ିଆ ଚାରଣମାନଙ୍କ ଭୂମିକା

ବର୍ଷ ବର୍ଷ ଧରି ଅନେକ ଭକ୍ତି ମୂଳକ ଗୀତ, ଗୀତିକବିତା ଓ ଗୀତିଗାଥା ଲୋକଶିକ୍ଷା ପାଇଁ ପ୍ରଚଳିତ ହୋଇ ଆସିଛି । ଆମରାଜ୍ୟର ଗାଁ ଗହଳିରେ ବାସ କରୁଥିବା ଅସଂଖ୍ୟ ନିରକ୍ଷର ଭାଇଭଉଣୀ ଏହି ଗୀତିଗାଥା ଓ ଗୀତି ମାଧ୍ୟମରେ ନୈତିକ, ସାମାଜିକ, ମାନବିକ ଓ ଧାର୍ମିକ ମୂଲ୍ୟବୋଧ ସମ୍ପର୍କରେ ସଚେତନ ହୋଇଥାଆନ୍ତି । ଅନେକ ଗୀତ ରହିଛି, ସେସବୁର ଯେ ରଚୟିତା କିଏ, ତାହା ଜଣା ପଡିନାହିଁ । କେଉଁ ଅଜ୍ଞାତ ଲେଖକ ତତ୍‌କାଳୀନ ସମାଜକୁ ଶିକ୍ଷା ଦେବାପାଇଁ ଏସବୁକୁ ରଚନା କରି ଯାଇଛନ୍ତି ତା' ହିସାବ କେହି ରଖିନାହିଁ । ସମ୍ଭବତଃ ବହୁ ସଂଖ୍ୟାରେ ନିରକ୍ଷର ଥିବାରୁ ଏହିଗୀତମାନ ଲିଖିତ ଅକାରରେ ରହିପାରି ନାହିଁ । କେବଳ ସେସବୁ ଲୋକ ମୁଖରୁ ଲୋକ ମୁଖକୁ ଗତିକରି ସାଧାରଣ ଲୋକଙ୍କର କଣ୍ଠସ୍ଥ ହୋଇ ରହିଛି । ଏହିସବୁ ଲୋକଗୀତ ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କର ତଥା ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ।

ଆଉ କେତେକ ଗୀତ ବି ରହିଛି । ସେସବୁ ମଧ୍ୟ ଲୋକ ମୁଖରେ ଭଲ ଭାବରେ ପ୍ରଚଳିତ । ସେସବୁର ଲେଖକ ଭାବରେ ପଞ୍ଚସଖା ଗୋଷ୍ଠୀର ଅଚ୍ୟୁତାନନ୍ଦ, ଜଗନ୍ନାଥ ଦାସ, ବଳରାମ ଦାସ ଓ ଯଶୋବନ୍ତ ଦାସ ସୁପରିଚିତ । ବଳରାମ ଦାସଙ୍କ 'ବଉଳା ଅଧ୍ୟାୟ' ଓ ଯଶୋବନ୍ତ ଦାସଙ୍କ 'ଗୋବିନ୍ଦଚନ୍ଦ୍ର' ଚରିତ ଓଡିଶାର ଅନ୍ୟତମ ଚାରଣ ଗୋଷ୍ଠୀ ନାଥ ଯୋଗୀମାନଙ୍କ କଣ୍ଠରେ ବହୁଳ ଭାବରେ ଲୋକପ୍ରିୟ । ସେହିପରି ଜଗନ୍ନାଥ ଦାସଙ୍କ ରଚିତ ଭାଗବତର ସାରକଥା ତଥା ଅନ୍ୟାନ୍ୟ ଅଜ୍ଞାତ ଲେଖକ ମାନଙ୍କ ରଚିତ ବହୁ ଉପାଦେୟ ନୀତିଶିକ୍ଷା ମୂଳକ ଗୀତିମାଳା ଯାହାକି ନୈତିକ ଓ ସାମାଜିକ ମୂଲ୍ୟବୋଧର ବିକାଶ ନିମନ୍ତେ ସହାୟକ ସେସବୁ ଓଡିଶାର ଅନ୍ୟତମ ଚାରଣ ଗୋଷ୍ଠୀ 'ଚକୁଳିଆ ପଣ୍ଡା' ମାନଙ୍କ କଣ୍ଠରେ ଖୁବ୍ ଲୋକ ପ୍ରିୟ । ବର୍ତ୍ତମାନ ସମୟରେ ଏହି ଚାରଣ ଗୋଷ୍ଠୀ ଦ୍ୱୟଙ୍କର କଣ୍ଠସ୍ୱର ଆଉ ଗ୍ରାମାଞ୍ଚଳରେ ସେତେ ପରିମାଣ ଶୁଭୁନାହିଁ । ଏ ହେଲା ନବ୍ୟସଭ୍ୟ ଯୁଗ । ସମସ୍ତେ ଆପଣାର କର୍ମ ତ୍ୟାଗ କରି ଅନ୍ୟକର୍ମରେ ଲିପ୍ତ । ସାକ୍ଷରତାର ହାର ବୃଦ୍ଧି ସହ ବିଜ୍ଞାନର ବିକାଶ ଯୋଗୁ ଲୋକେ ଆଉ ନାଥଯୋଗୀଙ୍କ କଣ୍ଠର କରୁଣ ସ୍ୱରରୁ ଗୋବିନ୍ଦ ଚନ୍ଦ୍ର ଉପାଖ୍ୟାନ, ବଉଳା ଗାଈ ଚରିତ, ଚକୁଳିଆ ପଣ୍ଡାଙ୍କ ମୁହଁରୁ ନୈତିକ ଓ ଧାର୍ମିକ ମୂଲ୍ୟବୋଧ ସମ୍ପୂର୍ଣ୍ଣ ବାଣୀ ଶ୍ରବଣରୁ ବଞ୍ଚିତ ହେଲେଣି ।

ହେଲେ ବି ଏଇ ଲୋକ ଶିକ୍ଷକ ମାନଙ୍କର ଦାନ ସମାଜ ପାଇଁ ଅତୁଳନୀୟ । ନାଥଯୋଗୀମାନେ ଓଡିଶାର ପୁରପଲ୍ଲୀରେ ସର୍ବତ୍ର ସୁପରିଚିତ । ଏମାନଙ୍କ ଗୀତ 'ଯୋଗୀଗୀତ' ଭାବରେ ପରିଚିତ । ଗାଁ ଗହଳିର ଝିଅ ବୋହୂ, କୂଳ ଭୂଆଷୁଣୀମାନେ ନାଥଯୋଗୀଙ୍କ କଣ୍ଠରୁ ବଳରାମ ଦାସଙ୍କ ରଚିତ ବଉଳା ଗାଈ ଉପାଖ୍ୟାନ ଓ ଅଜ୍ଞାତ କବି ଯୋଗୀନ୍ଦ୍ରଙ୍କ ନାମରେ ଭଣିତ 'ଟୀକାଗୋବିନ୍ଦ ଚନ୍ଦ୍ର' ଯାହାକି ଯଶୋବନ୍ତ ଦାସଙ୍କ

ରଚିତ 'ଗୋବିନ୍ଦଚନ୍ଦ୍ର' କଥା ବସ୍ତୁ ଉପରେ ଆଧାରିତ, ସେସବୁକୁ ଶ୍ରବଣକରି ଉଚିତମାର୍ଗରେ ପରିଚାଳିତ ହୁଅନ୍ତି ।

ବଳରାମଦାସଙ୍କ ରଚିତ ବଉଳାଗାଇ ଉପାଖ୍ୟାନ ମହାଭାରତରୁ ଆନୀତ । ଭୀଷ୍ମ ରହିଛନ୍ତି ଶରଶଯ୍ୟାରେ । ବଉଳା ଗାଇ ଚରିତର ଦୃଷ୍ଟାନ୍ତ ଦେଇ ଜିଜ୍ଞାସୁ ଯୁଧିଷ୍ଠିରଙ୍କ ପାଖରେ ସତ୍ୟର ମହିମା ଗାନ କରିଛନ୍ତି ।

ନଗରୀଟିଏ । ତା'ର ନାମ କାଞ୍ଚି । ତା ଭିତରେ ବିରଞ୍ଚିପୁର । ସେଠାରେ ରହୁଥିଲେ ଧନେଶ୍ୱର ନାମରେ ବଣିକ । ବଣିକଙ୍କର ଥିଲା ଗାଈଟିଏ । ଗାଈଟିର ନାମ ବଉଳା । ପ୍ରତିଦିନ ବଉଳା ବଣକୁ ଚରିବାକୁ ଯାଏ । ଦିନେ ତିନିଦିନର ବାଛୁରୀ ଛାଡି ସେ ବଣକୁ ଯାଇଛି ଚରିବା ପାଇଁ । ଛୁଆ କଥା ତା ଆଖିରେ ନାଚୁଛି । ଏତିକି ବେଳେ ସେ ଗୋଟିଏ ମହାବଳ ବାଘ ହାବୁଡରେ ପଡିଛି । ବାଘର ନାମ ନିପୁଆ । ସେ ସାତଦିନ ହେବ ଉପାସରେ ବୁଲୁଛି । ବଉଳାକୁ ଦେଖି ଖାଇବାକୁ ମନକଲା । ବଉଳା ନିଶ୍ଚେ ମରିବ । ସେଥିପାଇଁ ତା'ମନରେ ଅନୁଶୋଚନା ନାହିଁ । ସେ କେବଳ ଭାବୁଥିଲା ତା କଅଁଳିଆ ଛନଛନିଆ ବାଛୁରୀ କଥା । ''ବାଛୁରୀଟା ଭୋକରେ ଆଉଟ ପାଉଟ ହେଉଥିବ । ମୋତେ ନଦେଖି ତା'ପ୍ରାଣ ଉଡିଯିବ । ମୁଁ ଯାଉଛି ତାକୁ କ୍ଷୀର ଦେଇ ଆସିବି । ହେ ବାଘ ! ତାପରେ ତୁ ମତେଖାଇବୁ ।'' ବାଘ କହିଲା, 'ହଉ ତୁ ଯା' । ମୁଁ ତ ସାତ ଦିନ ଉପାସ ରହିଲିଣି, ଆଉ ଗୋଟେ ଦିନରେ କ'ଣ ମୋ ଜୀବନ ଚାଲି ଯିବ ?''

ବାଘ ମୁହଁରେ- '' ଆଜି ଉପବାସ ହେଲେ ମରି ଯିବି ନାହିଁ''
କାଲି ମୋତେ ପଡିଦେବ ତ୍ରୈଲୋକ୍ୟ ଗୋସାଇଁ''

ବଉଳା ଫେରିଛି ଘରକୁ । ତା' ବାଛୁରୀ ପାଖକୁ । ତାର କୋହ ଉଠୁଛି । ସେ ବାହୁନି ବାହୁନି କାନ୍ଦିକରି ତାର ସମସ୍ତ କଥା ତା' ବାଛୁରୀ ଆଗରେ କହିଛି । ତାପରେ ସେ ତା'ଛୁଆକୁ ଉପଦେଶ ଦେଇ କହିଛି—

"* * * * *

ଏକା ଏକା ହୋଇ ବନସ୍ତକୁ ନଯିବୁଟି ଚଂରି ।

ସାତ ପାଞ୍ଚ ଗାଈଙ୍କର ସଙ୍ଗେ ଚରୁ ଥିବୁ ।

ବେଳ ଘଡିଏକ ଥାଇ ଘରକୁ ଫେରିବୁ ।

ଗୋରୁ ବିଧାତା ଯେ ଶିଙ୍ଗ ଦେଲା ଦୁଇ ।

ବାନ୍ଧିବାବେଳକୁ କନ୍ଧ ଦେବୁଟି ଦେଖାଇ ।"

ଉପରୋକ୍ତ ପଙ୍‌କ୍ତିଟିରୁ ଏକତା ରଖି ମିଳିମିଶି ଚଳିଲେ କୌଣସି ଅସୁବିଧା ପଡିବ ନାହିଁ ବୋଲି ଉପଦେଶ ମିଳେ । ତାପରେ ବଉଳା ଲେଉଟି ଯାଇଛି ବଣକୁ । ବଉଳାର ସତ୍ୟ ନିଷ୍ଠାରେ କେବଳ ବାଘ ମନରେ ପରିବର୍ତ୍ତନ ଦେଖାଦେଇ ନାହିଁ, ସ୍ୱୟଂ ଭଗବାନଙ୍କ ଅନ୍ତରକୁ ଏହା ସ୍ପର୍ଶ କରିଛି । ବାଘ ନିପୁଆ କଣ୍ଠରେ ଭଗବାନ ବିରାଜ ମାନ କରିଛନ୍ତି । ନିପୁଆ କହିଲା-

"ବଉଳା, ବାହୁଡ ତୁ ଘର,

ତୋର ବାହୁଡିଲେ ମୁଁ ଛାଡିବି ଶରୀର"

ବାଘର ଗୁରୁ ରୂପେ ବଉଳା ପରିଗଣିତ ହୋଇଛି । ବଉଳା ଫେରିଆସିଛି ତା' ଛୁଆକୁ ପାଖକୁ ।

କବିଙ୍କ କଣ୍ଠରେ—

''ଏହାଶୁଣି ଯୁଜେଷ୍ଟି ଯେ ହୋଇଲେ ହରଷ
ବଉଳା ଲେଖା ଭଣିଲେ ବଳରାମ ଦାସ ।''

ବଉଳା ଗାଥା କିମ୍ବଦନ୍ତୀ ଭାବରେ ଓଡିଶାର ଘରେ ଘରେ ସୁପରିଚିତ ଓଡ଼ିଶାର ମୟୁରଭଞ୍ଜ ଜିଲ୍ଲାରେ ଏହି ଗାଥା ଅତ୍ୟନ୍ତ ଲୋକପ୍ରିୟ । ବଉଳା ଗାଈର ସତ୍ୟନିଷ୍ଠା ଓ ସଚ୍ଚରିତ୍ରତା ପାଇଁ ଲୋକେ ସେମାନଙ୍କର ସୁଧାର ଗାଈର ନାମ 'ବଉଳା' ବୋଲି ରଖିଥାଆନ୍ତି ।

ତା'ପରେ ଏହି ନାଥଯୋଗୀଙ୍କ କଣ୍ଠରେ ଖୁବ୍ ଲୋକପ୍ରିୟ ହୋଇ ପାରିଛି ଗୋବିନ୍ଦଚନ୍ଦ୍ର ଗୀତ । ଏହା ଓଡିଆ ଲୋକ ସାହିତ୍ୟର ଅମୂଲ୍ୟରତ୍ନ । ଏହି କାହାଣୀ, ଓଡିଶା, ବିହାର, ବଙ୍ଗଳା, ଉତ୍ତରପ୍ରଦେଶ, ପଞ୍ଜାବ ଓ ମହାରାଷ୍ଟ୍ର ପ୍ରଭୃତି ରାଜ୍ୟରେ ପରିବ୍ୟାପ୍ତ । କିନ୍ତୁ ଏହାର ଉତ୍ପତ୍ତିସ୍ଥଳ ବଙ୍ଗପ୍ରଦେଶ । ଏହି କାହାଣୀ ଅବଲମ୍ବନରେ ଆମ ଗଣକବି-ଲୋକ ଶିକ୍ଷକ ଯଶୋବନ୍ତ ଦାସ ''ବୃହତ୍ ଗୋବିନ୍ଦ ଚନ୍ଦ୍ର'' ନାମରେ ଖଣ୍ଡିଏ ପୁସ୍ତକ ଲେଖିଛନ୍ତି । ଏଥିରେ ହାଡିପା, ତନ୍ତୀପା ଆଦି ଚଉରାଶୀ ଜଣ ସିଦ୍ଧଙ୍କର କୀର୍ତ୍ତି ରହିଛି । ବଙ୍ଗର ରାଣୀ ନୟନାବତୀଙ୍କ ସ୍ଥାନରେ ଆମ ଓଡିଆ ଗୀତିଗାଥା ଗୋବିନ୍ଦ ଚନ୍ଦ୍ରରେ ମୁକୁତାଦେଈଙ୍କ ନାମରହିଛି । ରାଜପୁତ୍ର ଗୋବିନ୍ଦ ଚନ୍ଦ୍ରଙ୍କର ଭିକ୍ଷା ମାଗିବା ଚିତ୍ର ଶତଶତ ପଲ୍ଲୀ ସୀମନ୍ତିନୀ ମାନଙ୍କର ନୟନକୁ ଅଶ୍ରୁସିକ୍ତ କରେ ।

ଏଠାରେ ଗୋଟିଏ ବୈଜ୍ଞାନିକ ଦୃଷ୍ଟି ସମ୍ମତ ଉକ୍ତି ଉଲ୍ଲେଖ ଯୋଗ୍ୟ । ରାଣୀ ମୁକୁତାଦେଇଙ୍କର ପୁତ୍ର ନହେବାରୁ ରାଜା ତାଙ୍କୁ ଝିଙ୍ଗାସ ବଚନ ଶୁଣାଇଛନ୍ତି । ଫଳରେ

କବି ତାର ଉତ୍ତରରେ ରାଣୀ ମୁକୁତା ଦେଈଙ୍କ ମୁହଁରେ କହିଛନ୍ତି–

''ପୁତ୍ର କି ଗଛର ଫଳ ତୋଳିକରି ଦେବି ନେଇ ।
ସ୍ତ୍ରୀର କରମେ ଧନ ଥାଇ ନାଥ ପୁରୁଷ କରମେ ଜନ ।
ତୁମ କରମକୁ ପୁତ୍ରତ ନହେଲା କରୁଅଛ ମାନହୀନ ।''

ରାଣୀଙ୍କର ଏତାଦୃଶ ଦୋଷାରୋପରେ ରାଜା ରାଗରେ ପ୍ରଜ୍ୱଳିତ ହୋଇ ରାଣୀଙ୍କ ଉପରେ ନିର୍ମମ ଅତ୍ୟାଚାର କରିଛନ୍ତି । ରାଣୀଙ୍କର ଜୀବନ ବିପନ୍ନ ହୋଇଛି । ନାରୀନିର୍ଯ୍ୟାତନା କରିଛନ୍ତି ରାଜା । କବିଙ୍କ ଭାଷାରେ–

''ଚାଉଳ ସେରକ କୋଡ଼ିଏ କଉଡ଼ି ନିତିରାଜା ପଡ଼ିଦେଇ ।
କାନ କୋଲି କଣ୍ଟା ବାଇଗଣ ୫ଟା ଢାଳ ଢାଳିବାକୁ ଦେଇ ।।
ତୋଡ଼ିମାଛ ଥଣ୍ଟ ବାଇଗଣ ବେଣ୍ଟ ପରିବାରେ ଖଞ୍ଜୁଥାଇ ।
ଲୁଣ ବୋଲି କରି ଯାହାକୁ ଦିଅଇ ଢବଖାର ଭଣ୍ଡୁଥାଇ ।।
ହଳଦୀ ବୋଲିଣ ଯାହାକୁ ଦିଅଇ ବଣ କର୍ପୂର ଭଣ୍ଡଇ ।
ଅତି ହୀନିମାନ କରିଣ ରାଜନ ବନ୍ଦୀ ଘରେ ରଖି ଥାଇ ।''

ହେଲେ ରାଣୀ ମୁକୁତା ଦେଇ ମାତାଙ୍କ ସାହାଯ୍ୟରେ ଅରଣ୍ୟ ଭିତରେ ପ୍ରାସାଦ ତୋଳାଇ ରହିଛନ୍ତି । ନିଜର ପରାକାଷ୍ଠା ବଳରେ ହୃତ ଗୌରବ ଫେରି ପାଇଛନ୍ତି । ତଥାପି ରାଜା ତାଙ୍କ ଚରିତ୍ରରେ ସନ୍ଦେହ କରିବାରୁ ରାଣୀ ନିଜ ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ନାରୀ ନିର୍ଯ୍ୟାତନା ଭୋଗୀ ରାଣୀ ନିଜଦକ୍ଷତାର ପରିଚୟ ମଧ୍ୟ ପ୍ରଦାନ କରିଛନ୍ତି ।

''ସାତଥର କରି ରାଜାର ଝିଅ ସେ ଛୁଞ୍ଚିଅଗ୍ରେ ଚାଲିଗଲେ ।
ଛୁଞ୍ଚି ଅଗ୍ରଯାକ ମୋଡି ହୋଇଗଲା ରାଣୀତ କିଛି ନହେଲେ ।''
ସାତଥର କରି ରାଜାର ଝିଅ ସେ ଖଣ୍ଡା ଦାଢ଼େ ଚାଲିଗଲେ ।
ଖଣ୍ଡାଧାରଯାକ ମୋଡି ହୋଇଗଲା ରାଣୀତ କିଛି ନହେଲେ ।
ସାତଥର କରି ରାଜାର ଝିଅ ସେ ଅଗ୍ନିରେ ପରୀକ୍ଷା ଦେଲେ ।
ସାତଦିନ ଅନ୍ତେ ରାଜାର ଝିଅ ସେ ଅଗ୍ନିରୁ ଉଠି ଆସିଲେ ।
ନପୋଡିଲା କେଶ ନପୋଡିଲା ବାସ ନପୋଡିଲା ଚମଦେହୀ ।
ସେହି ସତୀକନ୍ୟା ବ୍ରହ୍ମାଣ୍ଡେ ଅଛନ୍ତି ପଦ୍ମଯେ ଫୁଟି ରହଇ ।''

ରାଣୀ ମୁକୁତାଦେଇ ଯୁଅ ଗୋବିନ୍ଦ ଚନ୍ଦ୍ରଙ୍କୁ ହାଡିପାଙ୍କ ଠାରୁ ଦୀକ୍ଷାନେବାପାଇଁ ଉପଦେଶ ଦେବାବେଳେ ପୁତ୍ର ଗୋବିନ୍ଦ ଚନ୍ଦ୍ର ଏକମତ ହୋଇ ନାହାନ୍ତି । କାରଣ ସେ ହାଡ଼ିପାଙ୍କୁ ଜାତିରେ ହାଡ଼ିବୋଲି କହି ଘୃଣା କରିଛନ୍ତି । ଜାତି ଭେଦ ନିନ୍ଦନୀୟ ବୋଲି କବି ରାଣୀ ମୁକୁତା ଦେଇଙ୍କ କଣ୍ଠରେ କହିଛନ୍ତି–

''ସୁନ୍ଦର ଦେଖିଣ ନଭୁଲ କୁମର ଜାତି ମହାକାଳ ଫଳ ।
ସେଥିରୁ ଯୋଡ଼ିଏ ଭାଙ୍ଗିକରି ଦେଖ ଭିତରେ ପୋଡ଼ା ଅଙ୍ଗାର ।।
ରଙ୍ଗ ଶିମୁଳିରେ କି ଦେଖି ଭୁଲୁଛୁ ଫୁଟିଲେ ଉଡ଼ିବ ତୁଳା ।
ଏତେ ବୁଝାଉଛି ମାନ ଗୋବିନ୍ଦରେ ତୁହିତ ହେଉଛୁ ଭୋଳା ।।''

ନାଥଯୋଗୀମାନଙ୍କର କେନ୍ଦରା ତନ୍ତ୍ରୀରେ ବଉଳା ଅଧ୍ୟାୟ ଓ ଗୋବିନ୍ଦ ଚନ୍ଦ୍ର ଗ୍ରାମାଞ୍ଚଳର ମହିଳା ମାନଙ୍କୁ ବେଶ୍ ଆକର୍ଷିତ କରେ । ଜଳାକବାଟି ପାଖରେ କାନଡେରି

କୂଳଭୂଆସୁଣୀ ନବବଧୂ ନାଥଯୋଗୀଙ୍କ କଣ୍ଠରୁ ଏହି ଅମୃତମୟ ଉପଦେଶାତ୍ମକ ଗୀତିଗାଥା ଶ୍ରବଣ କରିଥାଏ । ମଧ୍ୟମା-ବୟସ୍କା ମା ଭଉଣୀମାନେ, କୂଳ ସୀମନ୍ତିନୀମାନେ ଏରୁଣ୍ଡିବନ୍ଧରେ ଠିଆହୋଇ ଏହି ଗୀତ ଶୁଣନ୍ତି । ବୟସ୍କା ତଥା ବୃଦ୍ଧାମାତାମାନେ ଦାଣ୍ଡ ପିଣ୍ଡାରେ ରହି ଗୀତ ଶୁଣି ପରେ ନାଥଯୋଗୀଙ୍କ ଥାଳରେ ଭିକ୍ଷାପ୍ରଦାନ କରନ୍ତି । ଏହି ଗୀତରେ ରହିଛି ସବୁ କିଛି ।

ଅନ୍ୟତମ ଚାରଣ ଗୋଷ୍ଠୀ ହେଲେ 'ଚକୁଳିଆପଣ୍ଡା' । ଏମାନେ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳକୁ ଯାଆନ୍ତି । ପୂର୍ଣ୍ଣମୀ, ଅମାବାସ୍ୟା, ଏକାଦଶୀ, ଗ୍ରହଣ ଓ ସଂକ୍ରାନ୍ତି ଆଦି ପବିତ୍ର ଦିନମାନଙ୍କର ଦାଣ୍ଡରେ ବୁଲିବୁଲି ଭିକ୍ଷା ମାଗନ୍ତି । ସେମାନେ ତାଳପତ୍ରର ଗୋଲ ଛତା ଧରି ଥାଆନ୍ତି । ସତ୍‌ମାର୍ଗର ମହିମା ଗୀତ ଆକାରରେ ଲୋକମାନଙ୍କୁ ଶୁଣାନ୍ତି । ସେମାନେ ବୋଲୁଥିବା ଗୀତ ଗୁଡ଼ିକରୁ ପ୍ରାଚୀନ ତଥା ପୌରାଣିକ ଘଟଣାବଳୀର ସୂଚନା ମିଳିଥାଏ । ଏହାଦ୍ୱାରା ଶ୍ରୋତାର ଜ୍ଞାନ ବିକଶିତ ହୋଇଥାଏ । ଏମାନେ ଗୀତ ବୋଲିବୋଲି ଗାଁ ଦାଣ୍ଡରେ ଯାଆନ୍ତି । କାହାକୁ କିଛି ମାଗନ୍ତି ନାହିଁ କି କହନ୍ତି ନାହିଁ । ସେମାନେ ଗାଆନ୍ତି—

''ଦେଲେ ନେବେ, ଡାକିଲେ ଚାହିଁବେ ।
ନୋହିଲେ କାହାକୁ କିଛି ନକହି ଫେରିଯିବେ ।''

ସେମାନେ ଦାଣ୍ଡରେ ଯେଉଁ ପୌରାଣିକ ତଥ୍ୟ ସମ୍ବଳିତ ଗୀତବୋଲନ୍ତି—

''ଆହେ ଆପଣେ ! ଆହେ ଆପଣେ !
ଧର୍ମରୁ ରାମଚନ୍ଦ୍ର ଲଙ୍କାକଲେ ଜୟେ,

ଅଧର୍ମରୁ ରାବଣ ବଂଶ ଗଲା କ୍ଷୟେ...ଆହେ ଆପଣେ...
ଦେଇଥିଲେ ପାଇ ବୁଣିଥିଲେ ଦାଇ
ପଡିଆଭୂମିରେ ଗୋଧନ ଚରାଇ ।
ଦାତା, ଧନ, ଦେବତା ବ୍ରାହ୍ମଣ
ଅଦାତା ଧନ, ଅଗ୍ନିରେ ଦହନ ।
ବଳିଦାତା, କର୍ଣ୍ଣଦାତା, ଦାତା ଜୀମୂତ ବାହନ
ହରିଶ୍ଚନ୍ଦ୍ର, ଶିବଦାତା, ମୋକ୍ଷଦାତା ଜନାର୍ଦ୍ଦନ ।
ଆହେ ଆପଣେ କାହାରି ଭାଗ୍ୟରେ ଥିବ
ଆଜି ବ୍ରାହ୍ମଣକୁ ଦାନ ଦେବ ହେ....
ଦାତାଘର ଝିଅ ପୁଅ ଦାଣ୍ଡେ ଯାଚିଦେବ, ହେଳା ନକରିବ
ଗଙ୍ଗାରେ ସ୍ନାହାନ, ଗୟାରେ ପିଣ୍ଡଦାନ,
ନୀଳାଞ୍ଚଳରେ ନୀଳାଦ୍ରି ଦରଶନ,
ଭାଗ୍ୟେଥିଲେ ପ୍ରାଣୀମାନେ କରନ୍ତି ଏମାନ ।''

ପୁଣି ମଝିରେ ମଝିରେ ସେମାନେ ଜଗନ୍ନାଥ ଦାସଙ୍କ ଭାଗବତରୁ କିଛି ବୋଲି ଦିଅନ୍ତି—

''ଧର୍ମ ଧାରଣେ ଏ ଜଗତ । ଧର୍ମରେ ସୃଷ୍ଟି ଆତଯାତ ।।
ପ୍ରାଣୀର ଭଲମନ୍ଦ ବାଣୀ । ମରଣ କାଳେ ତାହା ଜାଣି ।।''

ଚକୁଳିଆପଣ୍ଡାଙ୍କର ଏହି ଗୀତକୁ ଗାଁରେ ଦୁଇଧାଡିରେ ବସି ଗ୍ରାମାଞ୍ଚଳର ମା ଭଉଣୀ ତଥା ପୁରୁଷ ଲୋକମାନେ ମଧ୍ୟ ଶୁଣନ୍ତି । ଧର୍ମ ଶିକ୍ଷା କରନ୍ତି । ସେମାନଙ୍କର

ଜ୍ଞାନ ବୃଦ୍ଧି ଘଟେ । ଶୁଣିବାବେଳେ ହାସ୍ୟ ଉଦ୍ଦୀପନା ବି ସୃଷ୍ଟି ହୁଏ । ଶିକ୍ଷା ଲାଭ ସଙ୍ଗେ ସଙ୍ଗେ ମନୋରଞ୍ଜନ ବି ହୋଇଥାଏ ।

ଗୀତ ମଝିରେ ଚକୁଳିଆ ପଣ୍ଡା ଗୋଟିଏ ଗୋଟିଏ ଢଗ ମଧ୍ୟ ଛାଡ଼ି ଦିଅନ୍ତି । ସେସବୁ ମଧ୍ୟ ଶିକ୍ଷଣୀୟ ତଥା ନୀତିପ୍ରଦ । ଏଥିରେ ଏକତା ଓ ସଂହତି ଭାବ ପରିଲକ୍ଷିତ ହୁଏ –

''ସାଇ ପଡ଼ିଶାରେ କରିବ ଘର ।
ଅଧେ ଆପଣା ଅଧେ ପର ।।''

''ବାରଜାତି ତେର ଗୋଲା । ବୈଷ୍ଣବ ହେଲେ ସବୁ ଗଲା ।।''

''ସମସ୍ତେତ ଏକାଜାତି । କାହୁଁ ଅଇଲା ଛୁଆଁ ଛୁତି ।।''

''ବୈକୁଣ୍ଠ ସମାନ ଆହା ଅଟେ ସେହି ଘର ।
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।।''

ଓଡ଼ିଆ ଚାରଣ ମାନେ ପ୍ରକୃତରେ ହେଲେ ଗଣ ଶିକ୍ଷା ଦାତା, ଗଣଶିକ୍ଷକ । ଶିକ୍ଷାକ୍ଷେତ୍ରକୁ ସେମାନଙ୍କ ଦାନ ଅତୁଳନୀୟ ।

# ଜନଶିକ୍ଷାର ପ୍ରସାର ପାଇଁ ଲୋକ ସାହିତ୍ୟର ଉପଯୋଗିତା

ଆମ ଦେଶର ୫୪୦ ଗୋଟି ଜିଲ୍ଲାରୁ ୪୧୦ ଟି ଜିଲ୍ଲାରେ ବର୍ତ୍ତମାନ ସଂପୂର୍ଣ୍ଣ ସାକ୍ଷରତା ଚାଲୁଅଛି । ଏହି ୪୧୦ ଜିଲ୍ଲା ମଧ୍ୟରୁ ୧୭୬ ଗୋଟି ଜିଲ୍ଲାରେ ମୌଳିକ ସାକ୍ଷରତା କାର୍ଯ୍ୟ ସମାପ୍ତ ହୋଇ ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ସେହିପରି ଆମ ରାଜ୍ୟ ଓଡିଶାରେ ବର୍ତ୍ତମାନ ୩୦ ଗୋଟି ଜିଲ୍ଲାରୁ ୨୧ ଗୋଟି ଜିଲ୍ଲାରେ ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ଚାଲିଛି । ସେଗୁଡିକ ହେଲା-ଗଂଜାମ, ସୁନ୍ଦରଗଡ, କେନ୍ଦୁଝର, ଅନୁଗୋଳ, ଢେଙ୍କାନାଳ, ସମ୍ବଲପୁର, ଦେଓଗଡ଼, ଝାରସୁଗୁଡ଼ା, କଳାହାଣ୍ଡି, ବଲାଙ୍ଗୀର, ସୋନପୁର, ନୟାଗଡ, ଗଜପତି, ନୂଆପଡ଼ା, ବାଲେଶ୍ୱର, କୋରାପୁଟ, ମାଲକାନ୍‌ଗିରି, କଟକ ଏବଂ ମୟୂର ଭଂଜ । ତନ୍ମଧ୍ୟରୁ ଅନୁଗୋଳ, ଢେଙ୍କାନାଳ, ଗଂଜାମ, ଝାରସୁଗୁଡା, କଳାହାଣ୍ଡି, କେନ୍ଦୁଝର, ମାଲକାନ୍‌ଗିରି, ନୂଆପଡା ଏବଂ ସୁନ୍ଦରଗଡ ଜିଲ୍ଲାରେ ସାକ୍ଷରତା ପରବର୍ତ୍ତୀ କାର୍ଯ୍ୟକ୍ରମ ଚାଲୁଛି । ୧୯୯୭ ମସିହା ସୁଦ୍ଧା ସାକ୍ଷରତା ଅଭିଯାନ ମାଧମରେ ୧୦ କୋଟି ଅଣସାକ୍ଷରଙ୍କୁ

ସାକ୍ଷର କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି । ତା ମଧ୍ୟରୁ ୪୫ ନିୟୁତ ସାକ୍ଷର ହୋଇ ସାରିଲେଣି ।

ଆଜିର ଏହି ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ଲୋକମାନଙ୍କର, ଲୋକମାନଙ୍କ ଦ୍ୱାରା ଏବଂ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ । ଭାରତ ବର୍ଷର ଅଗଣିତ ଅଣସାକ୍ଷର ଭାଇ ଭଉଣୀଙ୍କ ମନରେ ସାକ୍ଷରତା କାର୍ଯ୍ୟକ୍ରମ ପ୍ରତି ଏକ ଅନୁକୂଳ ମନୋଭାବ ସୃଷ୍ଟି କରିବା ଏବଂ ସାକ୍ଷରତା ଅଭିଯାନରେ ସେମାନଙ୍କୁ ସାମିଲ କରି ଲେଖାପଢା ଶିଖାଇବା ଏହି ଅଭିଯାନର ମୂଳ ଉଦ୍ଦେଶ୍ୟ ।

ଏହି ପରିପ୍ରେକ୍ଷୀରେ ଲୋକ ସାହିତ୍ୟର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଯେଉଁ ସାହିତ୍ୟର ଅନେକ ଅଂଶ ସମାଜର ସବୁସ୍ତରର ଲୋକମାନଙ୍କ ଦ୍ୱାରା ଶ୍ରଦ୍ଧାରେ ଗ୍ରହଣ କରାଯାଇଥାଏ, ସମାଜର ସବୁଶ୍ରେଣୀର ଲୋକ ଯାହାକୁ ଉପଭୋଗ କରିବାକୁ ସମର୍ଥ ହୁଅନ୍ତି, ଯାହାର ଏକ ମୁଖରୁ ଆଉ ଏକ ମୁଖକୁ ଶ୍ରୋତା-ବକ୍ତା ସଂପର୍କ ନେଇ ପୁରୁଷାନୁକ୍ରମେ ପରିପ୍ରସାର ଘଟିଥାଏ, ଶିଖିବାର କୌଣସି ଆନୁଷ୍ଠାନିକ ଔପଚାରିକତା ନଥାଇ କାନରେ ସୁଦ୍ଧା ଶୁଣି ଶୁଣି ଧୀରେ ଧୀରେ ଗୋଟିଏ ପିଢିରୁ ଅନ୍ୟ ପିଢିକୁ ପ୍ରସାରିତ ହୁଏ, ମନକୁ ମନ ଝରିଆସେ କେତେ କାହାଣୀ, କିମ୍ବଦନ୍ତୀର ପେଡ଼ି, ତାହାହିଁ ଲୋକ ସାହିତ୍ୟ ।

ଲୋକ ସାହିତ୍ୟ ଗୋଟିଏ ଜାତିର ମର୍ମବାଣୀ । ସ୍ଥାନ କାଳର ବାଡ଼ ଡେଇଁ ଏହା ସମଗ୍ର ମାନବ ଜାତିର ସଭ୍ୟତାର ସଂବାହକ । ଏହା କୋଟି ହୃଦୟର ଅନାବିଳ ପ୍ରକାଶ । ଶିକ୍ଷିତ ଅଶିକ୍ଷିତର ଭେଦ ଭାବ ନରଖି ଲୋକ ସାହିତ୍ୟ ସର୍ବତ୍ର ଆଦୃତ । ଏହା ଗଣମାନସ ଏବଂ ଗଣ ହୃଦୟର ସାମଗ୍ରିକ ସର୍ଜନା । ଏହାର ଆବେଦନ ସୁଦୂର

ପ୍ରସାରୀ । ଏହାର ସରଳ ସାର୍ବଜନୀନ ଆବେଦନ ଯୋଗୁଁ ଏହା ଲୋକମାନଙ୍କ ମଧ୍ୟରେ ଆଦୃତ ହୁଏ । ଏହା କେବଳ ଜୀବନର ଅବସର ବିନୋଦନ କାଳରେ ଦରକାର ପଡେ ନାହିଁ, ବରଂ ସାମାଜିକ, ଧାର୍ମିକ ଓ ପାରିବାରିକ କର୍ମରେ ଲୋକ ସାହିତ୍ୟର ବ୍ୟବହାର ସ୍ୱତଃସ୍ଫୁର୍ତ୍ତ ଭାବରେ ହୋଇଥାଏ । ଲୋକଧର୍ମ ଏବଂ ବିଶ୍ୱାସ ଚିରାଚରିତ ସତ୍ୟ ଏବଂ ନ୍ୟାୟ ପରି ମୌଳିକ ମାନବୀୟ ଗୁଣ ଦ୍ୱାରା ଏହା ଭୂଷିତ । ସମାଜିକରଣ କ୍ଷେତ୍ରରେ ଏବଂ ଲୋକଶିକ୍ଷା କ୍ଷେତ୍ରରେ ଲୋକ ସାହିତ୍ୟର ପରଂପରାର ବଳିଷ୍ଠ ଭୂମିକା ରହିଛି । କାରଣ ଲୋକଙ୍କର ଅଲିଖିତ ପରଂପରା ଜୀବନଚର୍ଯା, ପ୍ରଥା, ଚଳଣି ଲୋକ ସାହିତ୍ୟ ମାଧ୍ୟମରେ ଶୃଙ୍ଖଳିତ ହୋଇଥାଏ । ଚିରାଚରିତ ରୀତିରେ ଏହା ସମାଜକୁ ନିୟନ୍ତ୍ରଣ କରେ ।

ଲୋକ ସାହିତ୍ୟର 'ଲୋକ' ଏବଂ ଜନଶିକ୍ଷାର 'ଜନ' ଆପାତତଃ ସମାର୍ଥ ବାଚକ ଶବ୍ଦ । ଭାରତୀୟ ସମାଜ ପରିପ୍ରେକ୍ଷୀରେ ଏବେ 'ଲୋକ' ବା 'ଜନ' ସଂଖ୍ୟାଗରିଷ୍ଠ ନିରକ୍ଷର ଜନତାକୁ ହିଁ ବୁଝାଏ । ଏମାନଙ୍କ ଉପରେ ନିର୍ଭର କରେ ଦେଶର ପ୍ରଗତି । ଦେଶର ତଥା ଜାତିର ପ୍ରଗତି ପାଇଁ ଆବଶ୍ୟକ ହୁଏ ବିଭିନ୍ନ ସମ୍ବଳ । ଯେଉଁ ଦେଶର ସମ୍ବଳ ଯେତେ ଅଧିକ ଏବଂ ଉନ୍ନତ ସେ ଦେଶର ପ୍ରଗତି ସେତେ ଉଜ୍ଜ୍ୱଳ । ମାନବ ସମ୍ବଳ ବିକାଶର ଅସଲ ଚାବିକାଠି ସାକ୍ଷରତା । ସାକ୍ଷର ହେବାର ଅର୍ଥ ନୁହେଁ କେବଳ ଲେଖି ପଢ଼ି ଶିଖିବା । ଏତଦ୍ ବ୍ୟତୀତ ନିଜକୁ ଜାଣିବା, ଦେଶକୁ ଜାଣିବା ସାକ୍ଷର ବ୍ୟକ୍ତିର କର୍ତ୍ତବ୍ୟ । ଗୋଟିଏ କଥାରେ କହିବାକୁ ଗଲେ ଚକ୍ଷୁଆଖିଆ ହେବା । ତେଣୁ ଏହି ପରିପ୍ରେକ୍ଷୀରେ ଲୋକ ସାହିତ୍ୟରେ ଥିବା ସାକ୍ଷରତା ବାର୍ତ୍ତାର ଚିହ୍ନଟ, ତାର ଉପଯୋଗିତା ତଥା ଲୋକ ସାହିତ୍ୟରେ ସାକ୍ଷରତାର ବାର୍ତ୍ତାକୁ ପ୍ରୟୋଗ କରି ଅଣସାକ୍ଷର ଓ ନବସାକ୍ଷରମାନଙ୍କ ପାଖରେ ପହଞ୍ଚାଇବା ଏକାନ୍ତ ଆବଶ୍ୟକ । ମାର୍ଗ

ନିର୍ଣ୍ଣୟ ଏବଂ ସ୍ଥଳ ବିଶେଷରେ ସେ ସବୁର ପରିମାର୍ଜନା ସଙ୍ଗେ ସଙ୍ଗେ ନବସାକ୍ଷରମାନଙ୍କ ପାଇଁ ଜୀବନ ବ୍ୟାପି ଶିକ୍ଷାର ବ୍ୟବସ୍ଥା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଜଙ୍ଗଲ ଧ୍ୱଂସ ହେବା ଫଳରେ ପରିବେଶ ନଷ୍ଟ ହେଉଛି । ଫଳରେ ଠିକ୍ ସମୟରେ ବର୍ଷା ହେଉନାହିଁ । ଚାଷ କାର୍ଯ୍ୟ ବ୍ୟାହତ ହେଉଛି । ନାରୀ ଓ ପୁରୁଷ ମଧ୍ୟରେ ଭେଦଭାବ ସମାଜର କ୍ଷତି କରୁଛି । ବହୁକୁଟୁମ୍ବୀ ପରିବାର ଦାରିଦ୍ର୍ୟର କାରଣ । ପରିଚ୍ଛନ୍ନତା ଅଭାବରୁ ରୋଗ ବ୍ୟାପି ଯାଉଛି । ଏସବୁ କଥା ଉପଦେଶ ଛଳରେ କହିଲେ ଲୋକେ ନାକଟେକିବେ । କିନ୍ତୁ କୌଣସି ଲୋକ କଥା, ଲୋକ ଗାଥା ଅବଲମ୍ବନରେ ଯଦି ଏହା ନବସାକ୍ଷରମାନଙ୍କ ପାଖରେ ପହଞ୍ଚାଇ ଦିଆଯାଇପାରେ, ତାହାହେଲେ ଲୋକେ ତାହା ସହଜରେ ଗ୍ରହଣ କରିପାରିବେ ।

ଜନଶିକ୍ଷାର ପ୍ରସାରରେ ଲୋକସାହିତ୍ୟର ପ୍ରୟୋଗ ସେଥିପାଇଁ ଏକାନ୍ତ ଜରୁରୀ ।